# ବାଲେଶ୍ୱରୀ ପଙ୍ଗା ଲୁଣ

## ( ସତ୍ୟ ଘଟଣା )

ଅବହମାନ କାଳରୁ ବାଲେଶ୍ୱରରେ ପଙ୍ଗାଲୁଣ ପ୍ରସ୍ତୁତ ହୋଇ ଆସୁଥିଲା । ସରକାର ବାହାଦୁର କେଉଁ ସମୟରୁ ଏହି ବ୍ୟାପାରରେ ହସ୍ତକ୍ଷେପ କଲେ, ତାହା ନିର୍ଣ୍ଣୟ କରିବା ସହଜ କଥା ନୁହେ । ତେବେ, ଏକଥା ଅନୁମାନ କରାଯାଇ ପାରେ ଯେ, ୧୮୦୩ ଖ୍ରୀଷ୍ଟାବ୍ଦରେ ଇଷ୍ଟଇଣ୍ଡିଆ କୋମ୍ପାନି ଦେଶାଧିକାର କରିବା ପୂର୍ବରୁ ଏହି ବ୍ୟବସାୟରେ ଲିପ୍ତ ଥିଲେ; କାରଣ ତତ୍‌ପୂର୍ବେ ଇଂରେଜମାନେ ବାଲେଶ୍ୱରୀ ବାଣିଜ୍ୟ ସମ୍ପର୍କରେ ଥିବାର ନିଶ୍ଚୟରୂପେ ଜଣାଯାଏ । ଦେଶାଧିକାର ସମୟରୁ ପୋକ୍ତାନ କାର୍ଯ୍ୟ ସାକ୍ଷାତ୍ ସମ୍ବନ୍ଧରେ ବନ୍ଦୋବସ୍ତ କରିଥିବେ ।

୧୮୭୧ ଖ୍ରୀଷ୍ଟାବ୍ଦଠାରୁ ପୋକ୍ତାନ କାର୍ଯ୍ୟ ରହିତ ହୋଇଯାଇଅଛି । ଲେଖକ ଅଳ୍ପବୟସରେ ସରକାର ତରଫ ଲବଣ ମାହାଲ ସିରସ୍ତାରେ ଅଳ୍ପକାଳ ମାତ୍ର କର୍ମଚାରୀ ଥିଲା । ପୋକ୍ତାନ ସମ୍ବନ୍ଧରେ ତାହାର ଯେଉଁ ଅଭିଜ୍ଞତା ଅଛି, ବର୍ତ୍ତମାନ ସ୍ମରଣ ଶକ୍ତି ପ୍ରତି ନିର୍ଭର କରି ସେଥିର ସଂକ୍ଷିପ୍ତ ବିବରଣ ଲିପିବଦ୍ଧ କରୁଅଛି ।

ଲବଣ ମାହାଲର ସରକାର ତରଫର ପ୍ରଧାନ କର୍ମଚାରୀଙ୍କ ଉପାଧି ସଲ୍‌ଟ୍ ଏଜେଣ୍ଟ । ଏହି କର୍ମଚାରୀ ସ୍ୱତନ୍ତ୍ର ବ୍ୟକ୍ତି ନୁହନ୍ତି । ଜିଲାର କଲେକ୍ଟର ସାହେବ ସଲ୍‌ଟ୍ ଏଜେଣ୍ଟ । ତାହାଙ୍କ ଅଧୀନରେ ଆଉ ଦୁଇଜଣ ଇଂରେଜ ଆସିଷ୍ଟାଣ୍ଟ ସଲ୍‌ଟ୍ ଏଜେଣ୍ଟ ରୂପେ ନିଯୁକ୍ତ ଥିଲେ । ପୋକ୍ତାନ ରହିତ ହେବା ବର୍ଷରେ (ବୋଧକରୁଁ) ମିଷ୍ଟର କଟ୍ରେଲ ସଲ୍‌ଟ୍ ଏଜେଣ୍ଟ, ମିଷ୍ଟର ବଣ୍ଡ ଓ ମିଷ୍ଟର ମୁଫଟ ଆସିଷ୍ଟାଣ୍ଟ ସଲ୍‌ଟ୍ ଏଜେଣ୍ଟ ଥିଲେ ।

ଏଜେଣ୍ଟ ସାହେବଙ୍କ ଅଧୀନରେ ସଦର କଚେରୀରେ ଦୁଇ ଗୋଟି ସିରସ୍ତା ଥିଲା—ପ୍ରଥମ ମୁନସିଖାନା, ଦ୍ୱିତୀୟ ହିସାବଖାନା । ମୁନସିଖାନାରେ ନିଯୁକ୍ତ (ଦେଶୀୟ) କର୍ମଚାରୀମାନଙ୍କ ଉପାଧି—ଦେବାନ, ପେସ୍କାର, ମୁନସୀ

ରୋଜନାମଚ୍ଚ ନବସ୍, ପରୱାନା ନବସ, ନକଲ-ନବସ୍, ନାଜର ଏବଂ ଏମାନଙ୍କ ସହକାରୀ ମୋହରରମାନେ । ହିସାବ ଖାନାରେ ନିଯୁକ୍ତ କର୍ମଚାରୀମାନଙ୍କ ଉପାଧି—ସିରସ୍ତାଦାର, ମୁନସୀ ଓ ମୋହରରମାନେ । ଆମ୍ଭେମାନେ ଦେଖିଅଛୁଁ, ସଦର କଚେରୀରେ ଅନ୍ୟାନ୍ୟ ମହଲ୍ଲମାର ନିଯୁକ୍ତ କର୍ମଚାରୀଠାରୁ ନିମକ ମହାଲରେ ନିଯୁକ୍ତ ଅମଲା ସଂଖ୍ୟା ଅଧିକ । ନିମକ ମାହାଲ କଚେରୀ ସର୍ବଦା ଜନତାରେ ପୂର୍ଣ୍ଣ ଥାଏ ।

ନିମକ ଯୋଗାନ ସ୍ଥାନରେ ସରକାର ତରଫରୁ ନିଯୁକ୍ତ କର୍ମଚାରୀଙ୍କ ଉପାଧି—ଦାରୋଗା, ପେସ୍କାର, ଜଲ୍ଲାଦାର, ଚପରାସୀ, ଜାଳ ଚୌକିଆ, ଗୃହି ପାଇକ, ଚପାଦାର ଓ କପ୍ତାଳ । ନିମକ ବନ୍ଦି ସ୍ଥାନରେ ନିଯୁକ୍ତଥିବା କର୍ମଚାରୀ—ଦାରୋଗା ଓ ପେସ୍କାର । ଯୋଗାନ ସ୍ଥାନରେ ପ୍ରହରୀ, ପୋଲିସ କର୍ମଚାରୀ – ଜମାଦାର, ମୁନସୀ ଓ ଚପରାସୀ ।

ପ୍ରତିବର୍ଷ ଆଶ୍ୱିନ ମାସରେ ଯୋଗାନକାରୀମାନଙ୍କୁ ସରକାର ତରଫରୁ ଦାଦନ ଦିଆଯାଉଥିଲା । ଦାଦନ ଟଙ୍କା ଗ୍ରହଣକାରୀର ଉପାଧି ମୁଲିଆ । ମୁଲିଆମାନେ ସରକାରଙ୍କୁ କବୁଲିୟତ ଲେଖିଦେଇ ଦାଦନ ଗ୍ରହଣ କରନ୍ତି । ଏହି ଦାଦନ ସମ୍ପୃକ୍ତ ବାଲେଶ୍ୱର ସହର ମଧ୍ୟରେ ଉତ୍ସବ ସ୍ୱରୂପ ଥିଲା । ଅନେକ ଟଙ୍କା କାରବାର ହୁଏ । ସହର ମଧ୍ୟରେ ଦୋକାନୀମାନେ ଦୋକାନ ସଜାଇ ବସିଥାନ୍ତି । ବଜାରି, ହଟାରି, ଭିକାରୀ, ଅମଲା, ସଏଲା ସମସ୍ତଙ୍କର ଆଙ୍କା ଦୁଇପଇସା ହାତପେଠ ହୁଏ । ଲକ୍ଷାବଧି ଟଙ୍କା ଦାଦନ ଦିଆ ଯାଉଥିଲା । ମଫସଲବାସୀ ସାଧାରଣ ଶ୍ରେଣୀ ଲୋକଙ୍କ ହାତରେ ଥୋକ କେତେଗୁଡ଼ିଏ ଟଙ୍କା ପଡ଼ିଗଲେ ଆନନ୍ଦ ମନରେ ସ୍ତ୍ରୀ ପୁତ୍ର ପରିବାରମାନଙ୍କ ସକାଶେ ନାନା ପ୍ରକାର ଦ୍ରବ୍ୟ କ୍ରୟ କରି ନେଉଥାଆନ୍ତି ।

ମୁଲିଆ ଦାଦନ ନେଇ ଗୃହିକୁ ଯାଇଥାଏ । ଲବଣ ଯୋଗାନ ସ୍ଥାନର ନାମ ଗୃହି । କେତେଗୁଡ଼ିଏ ଗୃହିର ଏକତ୍ରରେ ସାଧାରଣ ନାମ ଅଡ଼ଂ । ଅବଶ୍ୟ ଗୃହି ଓ ଅଡ଼ଂଗୁଡ଼ିକ ସମୁଦ୍ରକୂଳବର୍ତ୍ତୀ ସ୍ଥାନରେ ଅବସ୍ଥିତ ।

ମୁଲିଆ ସ୍ୱହସ୍ତରେ ଲବଣ ପ୍ରସ୍ତୁତ କରେ ନାହିଁ । କାର୍ଯ୍ୟନିର୍ବାହ ନିମନ୍ତେ କେତେଗୁଡ଼ିଏ ଲୋକ ନିଯୁକ୍ତ କରେ । ସେ ( ମୁଲିଆ ) କେବଳ କର୍ତ୍ତାସ୍ୱରୂପ ହୋଇଥାଏ ।

ଉପଯୁକ୍ତ ସ୍ଥାନ ନିର୍ବାଚନ କରି ପାଡ଼ୀ ଉପାଧିଧାରୀ ଲୋକ ଚୁଲି ପ୍ରସ୍ତୁତକରେ । ଏହି ଚୁଲି ସଚରାଚର ଘରେରନ୍ଧା ଚୁଲିପରି ନୁହେ । ପାଠକ-ମାନଙ୍କ ମଧ୍ୟରୁ ଯେଉଁମାନେ ପୁରୀ କ୍ଷେତ୍ରରେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ରୋଷଚୁଲି ଦେଖିଅଛନ୍ତି, ସେମାନେ ସହଜରେ ବୁଝିପାରିବେ । ସୋଲ୍ଟାନ ଚୁଲିଗୁଡ଼ିକ ସେହିପରି ପିରାମିଡ଼ ଆକାର ଅଟେ; ମାତ୍ର ପ୍ରଭୁଙ୍କ ରୋଷ ଚୁଲିଠାରୁ ଅନେକ ବଡ଼ । କୌଣସି କୌଣସି ଚୁଲିର ନିମ୍ନ ପରିଧି ୨୦।୩୦ ହାତ ପର୍ଯ୍ୟନ୍ତ ହୋଇଥାଏ । ଉଚ୍ଚତା ପ୍ରାୟ ୩।୪ ହାତ । ବଡ଼ବଡ଼ ଚୁଲିରେ ଏକାବେଳକେ ଦୁଇ ତିନିଶତ ପର୍ଯ୍ୟନ୍ତ ହାଣ୍ଡି ବସେ । ହାଣ୍ଡିଗୁଡ଼ିକ ମଧ୍ୟ ସଚରାଚର ଘରରନ୍ଧା ହାଣ୍ଡିର ସମାନ ନୁହେଁ । ମହାପ୍ରସାଦ କୁଡ଼ୁଆ ସମାନ ଅଟେ । ଚୁଲି ପ୍ରସ୍ତୁତ ହେବା ମାତ୍ରକେ କୁମ୍ଭାର ହାଣ୍ଡି ଯୋଗାଇଦିଏ । ଗୋଟିଏ ଗୋଟିଏ ଚୁଲିରେ ଏକ ଜାଳକରେ ୨୦।୨୫ ମହଣ ଲବଣ ସୋଲ୍ଟାନ ହୁଏ । ଦିନମାନରେ ତିନି ଜାଳହୁଏ । କେହି କେହି କର୍ମଠ ପାଡ଼ୀ ଚାରି ଜାଳ ପର୍ଯ୍ୟନ୍ତ କରିପାରେ ।

ଚୁଲି ପ୍ରସ୍ତୁତ ହେବା ମାତ୍ରକେ ମଳଙ୍ଗୀ ଉପାଧିଧାରୀ କର୍ମଚାରୀ ପଟ୍ଟାଲରୁ ମାଟି ଚାଞ୍ଛିବାକୁ ଆରମ୍ଭ କରେ । ସମୁଦ୍ର ବେଳାଭୂମି ଉପରେ ଯେଉଁ ଅଳ୍ପ ଗଭୀର ପ୍ରାନ୍ତର ମଧ୍ୟରେ ଜୁଆର ସମୟରେ ସମୁଦ୍ର ଜଳ ପ୍ରବେଶକରେ, ଭଟ୍ଟା ସମୟରେ ଶୁଖିଲା ପଡ଼େ, ତାହାର ନାମ ପଟ୍ଟାଲ । ମଳଙ୍ଗୀ ମାଟି ଚାଞ୍ଛିଆଣି ଏକ ସ୍ଥାନରେ ବାଡ଼ି ପକାଏ । ମାଟି ସଂଗ୍ରହ ସ୍ଥାନର ନାମ ବାଡ଼ି । ବାଡ଼ି ଉପରେ ପୁନର୍ବାର ସମୁଦ୍ର ଜଳ ଢାଳି ଗୋଡ଼ରେ ଚକଟି ତରଳ କରାଯାଏ ।

ବାଡ଼ି ନିକଟରେ ଗୋଟିଏ ଗର୍ତ୍ତ ଖୋଳା ହୋଇଥାଏ, ସେ ଗର୍ତ୍ତର ନାମ କୁଣ୍ଡି । ବାଡ଼ିର ତଳମାଟି ଦେହରୁ କୁଣ୍ଡି ପର୍ଯ୍ୟନ୍ତ କେତେଏକ କୁଟା ଗୁଞ୍ଜି ଦିଆଯାଏ । ଚାଡ଼ିକଟା ଚମାର ଖେଜୁରି ଗଛ ବେକରୁ ଠେକକୁ ଯେପରି ଖଣ୍ଡେ ଖେଜୁରି ପତ୍ର ଗୁଞ୍ଜି ଦିଏ, ଏହା ସେହିପରି । କୁଟା କେତୋଟିକୁ ଅବଲମ୍ବନ କରି ବାଡ଼ି ଦେହରୁ କୁଣ୍ଡିକୁ ସମସ୍ତ ଜଳ ନିଗିଡ଼ି ଆସେ, ବାଡ଼ିରେ ମାଟିସବୁ ରହିଯାଏ । ସେହି ଲବଣାକ୍ତ ଜଳରନାମ ଦହପାଣି । ଦହପାଣିକୁ ହାଣ୍ଡିରେପକାଇ ଫୁଟାଇଲେ ପଙ୍ଗାଲୁଣ ପ୍ରସ୍ତୁତହୁଏ । ଚୁଲିଜାଳ ସମୟରେ ଆଠଠାରୁ ଷୋଳଜଣ ପର୍ଯ୍ୟନ୍ତ କର୍ମଚାରୀ ନିଯୁକ୍ତଥାନ୍ତି । ବାଲେଶ୍ୱର ଜିଲ୍ଲାରେ ଏପ୍ରକାର ସଂଖ୍ୟାଧିକ ଚୁଲି ଥିଲି । ଲୁଣମରା ଚୁଲିରେ କାଠ ଜଳେଣି ନାହିଁ । ସମୁଦ୍ରକୂଳରେ ୩।୪ ହାତ

ଉଚ୍ଛ ଏକ ପ୍ରକାର ଘାସ ଜାତହୁଏ, ସେହି ଘାସ ଜାଳନରେ ପ୍ରୟୋଜନ ହୁଏ । ଭଗବାନ ସେମାନଙ୍କ ଲୁଣ ତୋଳିବାର ସୁବିଧା ନିମନ୍ତେ ପଡ଼ିଆରେ ଏହି ଘାସ ଥୋଇ ଦେଇଥିଲେ । ଜାଳୁଆ ନାମକ କର୍ମଚାରୀ ଘାସ କାଟିବାରେ ନିଯୁକ୍ତ ହୁଏ । ଜବ ନାମକ ଏକ ପ୍ରକାର ତୀକ୍ଷ୍ଣଧାର ଅସ୍ତ୍ର ଦୁଇ ହାତରେ ଧରି ଅଭ୍ୟାସ ବଶତଃ ନଇଁପଡ଼ି ଅଳ୍ପସମୟ ମଧ୍ୟରେ ଅନେକ ଘାସ କାଟିପକାଏ । ଘାସ ଶୁଖିଗଲେ ନିଯୁକ୍ତ ବଳଦିଆମାନେ ବଡ଼ାବାନ୍ଧ ବଳଦରେ ଚୁଲି ପାଖକୁ ଘେନି ଆସନ୍ତି । ସେହି ଘାସ ରକ୍ଷାନିମନ୍ତେ ସରକାର ତରଫରୁ ଜାଳଚଉକିଆ ନିଯୁକ୍ତ ଥାନ୍ତି । ସହସ୍ର ସହସ୍ର ବଳଦ ଓ ବଳଦିଆ ଏହି କାର୍ଯ୍ୟରେ ନିଯୁକ୍ତ ଥିଲେ ।

ପାଡ଼ୀ ଲୁଣ ମାରି ଜମାକଲେ କଲ୍ଲାଦାର ଆସି ଓଜନ ନିଏ ଓ ନିମ୍ନଲିଖିତ ପ୍ରକାର ଫାରମରେ ଅଡ଼ଙ୍ଗପେସ୍କାର ନିକଟକୁ ରିପୋର୍ଟ କରେ ।

କଲ୍ଲାଦାର ଫାରମ ।

| ନାମ ଅଡ଼ଙ୍ଗ | ନାମ ଗୁଣ୍ଟି | ନାମ ଗୁଳିଆ | କେତେ ଜାଳ | ଲୁଣ ପରିମାଣ |
|---|---|---|---|---|
| ଗୁନୁଆ | କୁଳଗାଁ | ହରି ମଲ୍ଲିକ | ତିନି ଜାଳ | ୮୦ ମହଣ |

ଅଡ଼ଙ୍ଗ ପେସ୍କାର କଲ୍ଲାଦାରର ହିସାବ ପ୍ରାପ୍ତହୋଇ ଆପଣା ଖାତାରେ ଲୁଣର ପରିମାଣ ପ୍ରଭୃତି ଜମାକରି ନିଏ ଓ ସେଥିର ଏକ ପ୍ରସ୍ତ ନକଲ ସଦର କଚେରୀକୁ ପଠାଇଲେ ହିସାବ ମହକୁମା ଖାତାରେ ଜମା ହୁଏ ।

ସଦରକଚେରୀ ମୁନସୀଖାନାରେ ଲୁଣର କିଛି ହିସାବ ରହେନାହିଁ, ସର୍ବପ୍ରକାର ବନ୍ଦୋବସ୍ତର ଲେଖାପଢ଼ା ହୁଏ । ଅଡ଼ଙ୍ଗର ପେସ୍କାର ଗୁଣ୍ଟିରୁ ଲୁଣ ବୁହାଇ ନେଇ ସାଧାରଣ ଗୋଲାରେ ଜମା କରାଏ । ପୁନର୍ବାର ଓଜନ କରି ଗୋଲା ଜାତ ହେଲେ ଅଦଲଦାର ତାହା ଉପରେ ଅଦଲ ମାରିଦିଏ । ସରକାର ନିଯୁକ୍ତ କୟାଳ ଲୁଣ ଓଜନ କରେ ।

ଅଡ଼ଙ୍ଗର ଦାରୋଗା ସିରସ୍ତାର କିଛି କାର୍ଯ୍ୟକରେ ନାହିଁ । କେବଳ ଗୁଣ୍ଟିମାନଙ୍କରେ ଭ୍ରମଣକରି ଚୁଲିର କାର୍ଯ୍ୟ ତଦନ୍ତ କରେ ଓ ଚୁଲିଆମାନଙ୍କ ହାରଗୁହାରି ଶୁଣେ । ଦାରୋଗା ପାଲିଙ୍କି ବହିବା ନିମନ୍ତେ ସରକାରୁ

ତରଫରୁ ଆଠଜଣ ବେତେନ୍ଦ୍ର ନିଯୁକ୍ତ ଥାନ୍ତି । ଦାରୋଗା ଗସ୍ତ ସମୟରେ ତାହାଙ୍କ ପାଲଙ୍କି ଉପରେ ଗୋଟାଏ ପାଟଛତା ଧରାଯାଏ । ସେଥିସକାଶେ ତ୍ରିକାଳ ଛତାଧରା ଚାକର ବନ୍ଦୋବସ୍ତ ଥାଏ ।

ପୋକ୍ତାନ ଲୁଣ ପରିମାଣ ହିସାବରେ ମଳଙ୍ଗିଆମାନେ ଦ୍ୱିକିସ୍ତି କିସ୍ତି ଦାଦନ ବୈଶାଖମାସରେ ପ୍ରାପ୍ତ ହୁଅନ୍ତି । ଏହି ଦାଦନ ଟଙ୍କା ଅଡ଼ଙ୍ଗ ମୁଳାରେ ଦିଆଯାଏ । ବର୍ଷାକାଳ ଆରମ୍ଭ ହେଲାକ୍ଷଣି ପୋକ୍ତାନ କାର୍ଯ୍ୟ ବନ୍ଦ ହୋଇଯାଏ, ମଳଙ୍ଗିଆ ପ୍ରଭୃତି କର୍ମଚାରୀମାନେ ଚାକିରିରୁ ଆପଣା ଆପଣା ଘରକୁ ଚାଲିଯାନ୍ତି । ଏଥି ଉତ୍ତାରେ ସେପ୍ଟେମ୍ବର ମାସରେ ସଦର କଚେରୀ ହିସାବ ନିକାଶ ହେଲେ ମଳଙ୍ଗିଆମାନେ ଅବଶିଷ୍ଟ ମୂଲ୍ୟ ପ୍ରାପ୍ତ ହୁଅନ୍ତି । କେହି କେହି ମଳଙ୍ଗିଆ ସରଫ ବେଶୀ ବାବଦରେ ମଧ୍ୟ କିଛି କିଛି ପ୍ରାପ୍ତ ହୁଅନ୍ତି । ସରଫ ବେଶୀ ଅର୍ଥ, ମଳଙ୍ଗିଆମାନଙ୍କଠାରୁ ଖଟିରୁ ଲୁଣ ଓଜନ ନେବା ସମୟରେ କଞ୍ଚା ଲୁଣ ଓଜନରେ କିଛି କିଛି ମାଲ ବେଶୀ ନିଆ ଯାଇଥାଏ । ଅଡ଼ଂ ଗୋଲା ନିକାଶି ସମୟରେ ସେହି ମାଲ ବଳକା ହୋଇପଡ଼େ, ସେହି ବଳକା ଲୁଣର ଅର୍ଥ ସରଫ ବେଶୀ । ଏହା କିଛି ଊଣା ନୁହେ, ପାଞ୍ଚ ଦଶ ହଜାର ମହଣ ପର୍ଯ୍ୟନ୍ତ ମାଲ ବେଶୀ ହୋଇପଡ଼େ । ଏହି ଲବଣର ମୂଲ୍ୟ ଅଡ଼ଂର ସମସ୍ତ ମଳଙ୍ଗିଆଙ୍କୁ ବଣ୍ଟଣିକରି ଦିଆଯାଏ; ମାତ୍ର ପ୍ରତ୍ୟେକ ଅଡ଼ଙ୍ଗରେ ସରଫ ବେଶୀ ହେଲେ ମଧ୍ୟ ଦାରୋଗା, ପେସ୍କାର, ପ୍ରହରୀ, ପୋଲିସ,ଅମଲା ପ୍ରଭୃତି କର୍ମଚାରୀମାନେ ଚୋରାଇ ଭାବରେ ଶସ୍ତାଦରରେ ବିକିକରି ମୂଲ୍ୟ ବାଣ୍ଟି ନିଅନ୍ତି । ଏହି ଚୋରାଇ ଲୁଣ ନୀଳଗିରି ଓ ମୟୂରଭଞ୍ଜ ଗଡ଼ଜାତକୁ ଚାଲିଯାଏ ।

ପ୍ରତିବର୍ଷ ବାଲେଶ୍ୱର ଜିଲ୍ଲାରେ ନ ଲକ୍ଷ ମହଣ ଲୁଣ ପୋକ୍ତାନ ହେଉଥିଲା । ଏଥିମଧ୍ୟରୁ ନିଜ ବାଲେଶ୍ୱର ଜିଲ୍ଲାରେ ଖରଚ ନିମନ୍ତେ ଦେଢ଼ ଲକ୍ଷ ମହଣ ନିଜ ବାଲେଶ୍ୱର ଓ ଭଦ୍ରକ ଗୋଲାରେ ଗୋଲାଜାତ କରାଯାଇ ବାକି ସାଢ଼େ ସାତଲକ୍ଷ ମହଣ ଲୁଣ ବଙ୍ଗଦେଶରେ ବ୍ୟବହାର ନିମନ୍ତେ କଲିକତା ନିକଟବର୍ତ୍ତୀ ଗଙ୍ଗାନଦୀ ପଶ୍ଚିମକୂଳସ୍ଥ ସାଲିକା ନାମକ ଗୋଲାକୁ ଚଲାଣ ଦିଆଯାଏ । ଅଡ଼ଂ ଗୋଲାରୁ ସାଲିକା ଗୋଲାକୁ ଲୁଣ ଚଲାଣନେବା ନିମନ୍ତେ ପ୍ରାୟ ତିନିଶତ ବାଲେଶ୍ୱରୀ ଜାହାଜ ନିଯୁକ୍ତ ଥିଲା । ଦୁଇ ଡୁଲିଆ ବଡ଼ ଜାହାଜରନାମ ଗୋରାପ, ଏକ ଡୁଲିଆ ସାନ ଜାହାଜରନାମ ଶ୍ଳୋପା ଖଣ୍ଡେ ଖଣ୍ଡେ ଗୋରାପ ଆଠ ଦଶ ହଜାର ମହଣ ପର୍ଯ୍ୟନ୍ତ ମାଲ ବୋଝାଇ ନିଏ । ଖଣ୍ଡିଏ ଖଣ୍ଡିଏ ଜାହାଜ ଚଳାଇବା ନିମନ୍ତେ ଦଶ କୋଡ଼ିଏ ଜଣ

କର୍ମଚାରୀ ନିଯୁକ୍ତ ଥିଲେ । ଜାହାଜଗୁଡ଼ିକର ଉପାଧି ମାଝି, ତାହାର ସହକାରୀ ଟଣ୍ଡେଲ, ଅନ୍ୟାନ୍ୟ କର୍ମଚାରୀଙ୍କ ଉପାଧି ଖଲାସୀ । ଯଦି ପ୍ରତ୍ୟେକ ଜାହାଜରେ ହାରାହାରି ପନ୍ଦର ଜଣ କର୍ମଚାରୀ ଧରାଯାଏ, ତେବେ ସେମାନଙ୍କ ସଂଖ୍ୟା ପ୍ରାୟ ସାଢ଼େ ଚାରି ହଜାର । ଏହା ଛଡ଼ା ଜାହାଜ ନିର୍ମାଣକାରୀ ବଢ଼ାଇ, କମାର କଳାପିଠିଆ, ସଡ଼ସିଲାଇ, ଦରଜୀ ଓ ଅନ୍ୟାନ୍ୟ ଲୋକଙ୍କର ସଂଖ୍ୟା ପ୍ରାୟ ପାଞ୍ଚ ହଜାର । ସମସ୍ତେ ବାଲେଶ୍ୱର ଜିଲ୍ଲାନିବାସୀ; ଜାହାଜର ଅଧିକାରୀ ମହାଜନମାନେ ମଧ୍ୟ ବାଲେଶ୍ୱରୀ । କେବଳ ଲବଣ ବାଣିଜ୍ୟରେ ଯେ ଜାହାଜ ସବୁ ନିଯୁକ୍ତ ଥିଲା, ତାହା ନୁହେଁ । ସେ ସମୟରେ କି ଅନ୍ତର୍ବାଣିଜ୍ୟ, କି ବହିର୍ବାଣିଜ୍ୟ ସମସ୍ତ ବାଲେଶ୍ୱରବାସୀମାନଙ୍କ ହସ୍ତରେ ଥିଲା । ବାଣିଜ୍ୟ ଉପଲକ୍ଷରେ ବାଲେଶ୍ୱରୀ ଜାହାଜ ସବୁ ଗୋପାଳପୁର, ବିଶାଖପଟ୍ଟନ, ମାନ୍ଦ୍ରାଜ, ରେଙ୍ଗୁନ ଓ ଅନ୍ୟାନ୍ୟ ଦ୍ୱୀପକୁ ଗତାୟାତ କରୁଥିଲେ ।

ବାଲେଶ୍ୱରବାସୀମାନଙ୍କର ଦୁଇଗୋଟି ବସ୍ତୁ ପ୍ରଧାନ ଉପଜୀବ୍ୟ— ଲବଣ ଓ ଧାନ୍ୟ । ଜିଲ୍ଲାର ପ୍ରାୟ ଏକଚତୁର୍ଥାଂଶ ଲୋକ ପ୍ରତ୍ୟକ୍ଷ ଓ ପରୋକ୍ଷଭାବରେ ଲବଣ ବ୍ୟବସାୟରେ ନିଯୁକ୍ତ ଥିଲେ । ବାଲେଶ୍ୱର ଉପକଣ୍ଠସ୍ଥ ବୁଡ଼ାବଳଙ୍ଗ ନଦୀ ଜାହାଜ ଓ ନଦୀକୂଳ ଜନତାରେ ପରିପୂର୍ଣ୍ଣ ଥିଲା । ବର୍ତ୍ତମାନ ଶ୍ମଶାନକ୍ଷେତ୍ରବତ୍ ପଡ଼ି ରହିଅଛି । ବାଲେଶ୍ୱରୀ ଜାହାଜର ଚିହ୍ନ ମାତ୍ର ନାହିଁ । ଯେଉଁମାନେ ଜାହାଜ ଚାଳନ ଓ ନିର୍ମାଣ କାର୍ଯ୍ୟରେ ପୁରୁଷାନୁକ୍ରମରେ ନିଯୁକ୍ତ ଥିଲେ (ଅନ୍ୟାନ୍ୟ କାର୍ଯ୍ୟରେ ଅନଭ୍ୟସ୍ତ), ସେମାନଙ୍କ ବଂଶ କାହାନ୍ତି ? ଗତ ନଅଙ୍କ ଦୁର୍ଭିକ୍ଷ ଅନୁଗ୍ରହ କରି ସେ ସମସ୍ତ ଲୋକଙ୍କୁ ସବଂଶରେ ଶାନ୍ତିନିକେତନକୁ ନେଇ ଯାଇଅଛି । ଅନ୍ୟଥା ସେଗୁଡ଼ିକ କି କଲବଲ ହୋଇଥାନ୍ତେ ।

୧୮୭୧ ଖ୍ରୀଷ୍ଟାବ୍ଦରେ ସରକାରୀ ପୋତ୍ତାନ କାର୍ଯ୍ୟ ବନ୍ଦ ହୋଇ-ଗଲା । ତହିଁ ଉତ୍ତାରେ କେତେକ ବର୍ଷ ବାଲେଶ୍ୱରବାସୀ କେତେ ଜଣ ମହାଜନ ଯୌଥରୂପେ ବାଲେଶ୍ୱରର କଷ୍ଟମ୍ସ ସକାଶେ ସରକାର ଅନୁମତି ଅନୁସାରେ ପୋତ୍ତାନ କାର୍ଯ୍ୟ ଚଳାଇଥିଲେ । କି କାରଣ ଆମ୍ଭମାନଙ୍କୁ ଅଗୋଚର, ଭୟଙ୍କରରୂପେ କ୍ଷତିଗ୍ରସ୍ତ ହୋଇ ଛାଡ଼ି ଦେଇଅଛନ୍ତି । କେତେ ଜଣ ମହାଜନ ସର୍ବସ୍ୱାନ୍ତ ମଧ୍ୟ ହୋଇଅଛନ୍ତି ।

ଲାଭ ନ ହେବାରୁ କି ସରକାର ଘୋଲ୍ରାନ କାର୍ଯ୍ୟ ରହିତ କରାଇ ଦେଲେ ? ସରକାର ଚୂଲଆମାନଙ୍କ ନିକଟରୁ ପ୍ରତି ମହଣ ଯାଅଣା ହିସାବରେ ଗ୍ରହଣ କରୁଥିଲେ, ବିକ୍ରି ମହଣକୁ ଦୁଇ ଟଙ୍କା । ପ୍ରତି ମହଣରେ ଟଙ୍କାଏ ଏଗାର ଅଣା ଲାଭ । କେବଳ ବାଲେଶ୍ୱର ଜିଲ୍ଲାର ନ ଲକ୍ଷ ମହଣର ଲାଭ ହିସାବ କରି ନିଅ । କଟକ ପୁରୀ ଜିଲ୍ଲାର କଥା ଥାଉ ।

"କ୍ଷୀରବ୍ଧିତନୟା ରମା ।" ଲକ୍ଷ୍ମୀଙ୍କର ପିତୃଭବନ ସମୁଦ୍ର କୂଳରେ ଅବସ୍ଥିତ ଥିବାରୁ ଚିରଦିନ ଲକ୍ଷ୍ମୀ ଏହି ଜିଲ୍ଲାରେ ବିରାଜିତା ଥିଲେ । ସମୁଦ୍ର କୂଳବର୍ତ୍ତୀ ବାଣିଜ୍ୟସ୍ଥାନର ନାମ ବନ୍ଦର, ଏଥିପାଇଁ ଏହାର ନାମ ବନ୍ଦର ବାଲେଶ୍ୱର । ତିନି ଶତ ବର୍ଷ ପୂର୍ବେ ବଙ୍ଗଦେଶକୁ ଯିବା ପୂର୍ବ ଓଲନ୍ଦାଜ, ଫରାସି, ଡେନେମାର ଓ ଇଂରାଜ ବଣିକମାନେ ଏଠାରେ ଦୋକାନ ମେଲି ଥିଲେ ।

ବାଲେଶ୍ୱର ଯେପରି ଲକ୍ଷ୍ମୀବନ୍ତ ସ୍ଥାନ, ଦୁଇ ଚାରି ବର୍ଷ ଅକାଳ ପଡ଼ିଲେ ମଧ୍ୟ ସମ୍ଭାଳି ଯିବାର କଥା; ମାତ୍ର ଏହି ସୁଭିକ୍ଷ ସମୟରେ ସମ୍ପୂର୍ଣ୍ଣ ରୂପେ ଶସ୍ୟ ଜନ୍ମିଥିଲେ ମଧ୍ୟ ସହରବାସୀ ସାଧାରଣ ଲୋକ ମଧ୍ୟରେ ଦଶପଣ ଲୋକଙ୍କ ଘରେ ଦୁଇଓଳି ଚୁଲି ଜଳେ କି ନା, ସନ୍ଦେହ । ମଧ୍ୟବିତ୍ତ ଲୋକଙ୍କ ଅବସ୍ଥା ପ୍ରାୟ ତଥୈବଚ । ଏକମାତ୍ର କାରଣ—ଅର୍ଥାଭାବ । କେବଳ ଲବଣ ଘୋଲ୍ରାନ ଉଠିଯିବାରୁ ସମସ୍ତ ଯାଇଅଛି, କାରିଗର ବଂଶ ତ ନିର୍ମୂଳ ହୋଇଅଛନ୍ତି । ବାଣିଜ୍ୟକ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ମହାଜନ ଜଣେମଧ୍ୟ ନାହାଁନ୍ତି । ବିଦେଶୀୟ ମାରୁଆଡ଼, କଚ୍ଛୀ, ଭାଟିଆ, ନାଖୋଦାମାନେ ମାଡ଼ି ବସିଲେଣି । ହାତରେ ଅର୍ଥ କାହିଁ ଯେ, ଧନବନ୍ତ ବିଦେଶୀ ମହାଜନଙ୍କ ସହିତ ଟକ୍କର ଦେଇପାରିବେ ।

ଏହି କ୍ଷୁଦ୍ର ଜିଲ୍ଲାରୁ ପ୍ରତିବର୍ଷ ପ୍ରାୟ କୋଟିସଂଖ୍ୟକ ଟଙ୍କାର ଧାନ ଚାଉଳ ବିଦେଶକୁ ରପ୍ତାନି ହୁଏ । ରେଲଷ୍ଟେସନ ଚାଉଳ ବସ୍ତାରେ ପରିପୂର୍ଣ୍ଣ । ସଡ଼କମାନଙ୍କରେ ହଜାରହଜାର ଚାଉଳ ଶଗଡ଼ ଚାଲିଅଛି, ଅଥଚ ସହରବାସୀ ଅଧିକାଂଶ ଲୋକ କାତର ନୟନରେ, ଖାଲି ପେଟରେ ଭକ-ଭକ କରି ଚାହିଁ ବସିଛନ୍ତି ।

ଧାନ ଚାଉଳ ବିକ୍ରିରେ ମଫସଲବାସୀ ଚାଷୀମାନଙ୍କର ଦୁଇ ଟଙ୍କା ହାତଫେରି ହେଉଅଛି ସତ୍ୟ; ମାତ୍ର ଖୋଜନ୍ତୁ, ଘର ଶୂନ୍ୟ ଦେଖିବେ । ଟଙ୍କା

ହାଟପେଠ ହେବା ମାତ୍ରକେ ଲୋକେ ଲୋଭ ସମ୍ଭାଳି ନ ପାରି ଜର୍ମାନୀ ଝୁଟାରେ ରେପାର ଛତା ପ୍ରଭୃତି କିଣି ନେଇ ଘରେ ପୂରାଉଅଛନ୍ତି । ବର୍ଷେ ଅକାଳ ପଡ଼ୁ, ଦେଖିବେ, ଲୋକଗୁଡ଼ାକ ଲମ୍ବ ଲମ୍ବ ଧଣ୍ଡ ପରି ଶୋଇଯିବେ ।

ଆଗେ ଦେଶବାସୀ ସମୁଦ୍ରକୂଳ ମାଟି ବିକି କରି ଟଙ୍କା ପାଉଥିଲେ, ବର୍ତ୍ତମାନ ଚାଉଳ ବିକି କରି ଜର୍ମାନୀ ମାଟି କିଣୁଅଛନ୍ତି । ରେପାର ଫେପାର-ଗୁଡ଼ାକୁ ଆମ୍ଭେମାନେ ମାଟି ବୋଲୁଅଛୁ । ଆମ୍ଭେମାନେ ବୋଲୁଅଛୁଁ, ପୂର୍ବେ ବାଲେଶ୍ୱର ଜିଲ୍ଲାରେ ପ୍ରତିବର୍ଷ ନ ଲକ୍ଷ ମହଣ ଲୁଣ ପୋକ୍ତାନ ହେଉଥିଲା । ଆଜଯାଏ ଯେବେ କାର୍ଯ୍ୟ ଚଳୁଥିଲେ ବ୍ୟବସାୟ ଉନ୍ନତି ଲଭ କରି ପ୍ରତି ବର୍ଷରେ ଅତି ନ୍ୟୁନରେ କୋଡ଼ିଏ ଲକ୍ଷ ମହଣ ପୋକ୍ତାନ ହେଉଥାନ୍ତା । ସୁତରାଂ, ଅଭାବପକ୍ଷେ ଦଶ ଲକ୍ଷ ଟଙ୍କା ଦେଶରେ ପଶୁଥାନ୍ତା । ହଜାର ବର୍ଷ ପୂର୍ବ ସମୁଦ୍ରଗାମୀ ନୌଚାଳକ, ସମୁଦ୍ରକୂଳବାସୀ କୈବର୍ତ୍ତ ବଂଶ ଆଜି ବିଜ୍ଞାନଚର୍ଚ୍ଚା ସମୟରେ କେତେ ଉନ୍ନତି ଲଭ କରିଥାନ୍ତେ !

ଆଜିକାଲି ବାଲେଶ୍ୱରର ଯାହା କିଛି ଚାକଚକ୍ୟ ବିଦେଶୀମାନଙ୍କ ସକାଶେ । ମହାଜନ ବିଦେଶୀ, କଚେରୀର ବଡ଼ ବଡ଼ ଚାକର ପ୍ରାୟ ବିଦେଶୀ । ରେଳଷ୍ଟେସନରେ କର୍ମ ପାଇବା ଓଡ଼ିଆଙ୍କ କପାଳେ ଲେଖା ନାହିଁ । ଜମିଦାରଗୁଡ଼ାକ ତ ହାତ ବାନ୍ଧି ରହିଲେଣି । ଏବେ କୃଷି ଏକମାତ୍ର ଅବଲମ୍ବନ । ହେଲେ ଜମି କାହିଁ ?

ହେ ଭଗବାନ୍ ! ଆମ୍ଭମାନଙ୍କ ଦୟାଳୁ ଗଭର୍ଣ୍ଣମେଣ୍ଟଙ୍କ କର୍ଣ୍ଣରେ ସ୍ୱଚଜତ ହେଉନ୍ତୁ । ବାଲେଶ୍ୱର ଜିଲ୍ଲାରେ ପୂର୍ବବତ୍ ଲୁଣ ପୋକ୍ତାନ କାର୍ଯ୍ୟ ଆରମ୍ଭ ହେଉ ।



# ମାଧ ମହାନ୍ତିଙ୍କ କନ୍ୟାସୁନା

ମାଧ ମହାନ୍ତିଙ୍କ ଘର ମଧୁପୁର । ଜାତିରେ ବଳରାମଗୋତ୍ରୀ । ବୟସ ସତୁରିକ ଭିତରେ । ଘରେ ଖାଇବାକୁ କୁଟୁମ୍ବ ବୋଇଲେ ଉଣା ପୂରା ପନ୍ଦର ବର୍ଷର ଝିଅଟିଏ, ନାମ ମାଳତୀ । ମହାନ୍ତିଏ ଷାଠିଏ ବର୍ଷ ବୟସରୁ ଟଣ୍ଡୁରା ହୋଇ ବସିଛନ୍ତି । ବୁଢ଼ୀ ମଲା ଯିବାବେଳେ ଆଉ ଗୋଟିଏ ହାତଧରା କରିବାକୁ ତାଙ୍କର ବୟସ ଥିଲା ବୋଲି ମହାନ୍ତିଙ୍କ ମୁହଁରୁ ଥରେ ଦି'ଥର ଶୁଣା ଯାଇଥିଲା, ତାଙ୍କ ଘରଘର ଲୋକେ ମଧ୍ୟ କହି ବୁଲୁଥିଲେ । ଦୁଇ ତିନି ବର୍ଷଯାଏ ତାଙ୍କ ମନ ବି ବିବାହ ଦେବା ଲାଗି ସକସକ ହୋଇଥିଲା, କେବଳ କନ୍ୟାସୁନା ବାଡ଼ଟା ବଡ଼ ଟାଣ ପଡ଼ିବାରୁ ପଛଘୁଞ୍ଚା ଦେଲେ । ଦୁଇ ତିନି ବର୍ଷଯାଏ କହି ବୁଲିଲେ, "ନାହିଁ ରେ ବାପା ନାହିଁ, କାହିଁ ଗୋଟାଏ ଆସି ମୋ ଝିଅକୁ ନିହାଟାଦର କରିବ, ମା'ଛେଉଣ୍ଡଟି କାନ୍ଦିବ, ତା ବିକଳ ସହିପାରିବି ନାହିଁ ।" ମା ମଲା ଦିନରୁ ସେହି ସାତ ବର୍ଷର ଝିଅ ମାଳତୀ—ବାପା ଝିଅ ଦୁଇଜଣଙ୍କର ଭାତ ରାନ୍ଧେ, ସଙ୍ଗୁଡ଼ି ବାସନ ମାଜେ । ଘରର ଆଉ ଆଉ କାମଟି ବି ତା' ଜିମା ।

ମହାନ୍ତିଙ୍କର ଆଉ ଗୋଟିଏ ଝିଅ ଥିଲା, ନାମ ମାଧବୀ । ବୁଢ଼ୀ ମରିବା ଚାରିମାସ ଆଗେ ମହାନ୍ତିଏ ସାତଶହ ଟଙ୍କା କନ୍ୟାସୁନାରେ ଷାଠିଏ ବର୍ଷର ଗୋଟିଏ ବୁଢ଼ା ବରକୁ ସାଢ଼େ ଆଠ ବରଷର କନ୍ୟା ଟେକି ଦେଇ ଗୌରୀଦାନର ଫଳ ଷୋଳପଣ ଅର୍ଜିଥିଲେ । ସେ କନ୍ୟାଟି ଏଗାର-ବର୍ଷ ବୟସରୁ ବିଧବା । ଯେ ବିଭା ହୋଇଯାଇଚି, ବାପଘରମୁହାଁ କେବେ ହୋଇ ନାହିଁ ।

ମୂଳକର ଆଉ ଝିଅଙ୍କ ପରି ମାଳତୀଟି ବି ଦିନକୁ ଦିନ ବଢ଼ି ବଢ଼ି ପନ୍ଦରବର୍ଷରେ ପାଦ ଦେଲାଣି । ରୂପରେ, ଗୁଣରେ ମାଳତୀର ସମକକ୍ଷ ଝିଅଟିଏ ମଧୁପୁର ତ ମଧୁପୁର, ଦଶଖଣ୍ଡ ଗାଁରେ ହେଲେ ଗୋଟିଏ ଖୋଜି

ଯାଇବ ନାହିଁ । ଲୋକେ କହନ୍ତି, ଗୋବର-ଗଡ଼ିଆରେ ପଦ୍ମଫୁଲ ଫୁଟିଛି । ମାଳତୀ ଗାଁ ଝିଅଙ୍କ ପରି ଆଉ ଆଉ ସମବୟସୀ ଝିଅଙ୍କ ସାଙ୍ଗରେ ହେଁ ହେଁ, ଫେଁ ଫେଁ ହେବାର କେହି ଦେଖି ନାହିଁ । କବାଟଟି କିଳିଦେଇ ଘରେ ଆପଣା ଯାଇଟିରେ ଲାଗିଥାଏ । ପାଣି ଆଣିବା ପାଇଁ ପୋଖରୀକୁ ଯିବା ବାହାରେ । ମୁଣ୍ଡରେ ସାନ ଓଢ଼ଣୀଟି ଟାଣିଦେଇ, ମାଠିଆଟି କାଖେଇ ଗାଁ ଗୋହିରୀ ଏକପାଖିଆ ଧୀରେ ଧୀରେ ଚାଲିଯାଏ । ଗାଁର ପାଞ୍ଚମାଇପେ କହନ୍ତି, ମାଳତୀର ଚାଲିଟି କେଡ଼େସୁନ୍ଦର ! ପନ୍ଦର ବର୍ଷର ଅଭିଆଡ଼ି ଝିଅଟାକୁ ଘରେ ରଖିଛି ! ଗାଁରେ ଜାତିରେ ମହାନ୍ତିଙ୍କୁ ବଡ଼ ଧିକାରିଲେଣି । ଆଉ ଏଣିକି ମହାନ୍ତିଏ ସମ୍ଭାଳି ହୋଇ ପାରୁନାହାନ୍ତି । ଝିଅଟି ଯେ ଆଜିଯାଏ ବାହା ହୋଇ ଯାଇ ନାହିଁ, ସେଥିର କାରଣ, ଝିଅ ବାହା ହୋଇଗଲେ ଭାତ ହାଣ୍ଡି ଫୁଟାଫୁଟି କରି ଦେବ କିଏ ? ଆଉ ଏପରି ଗୁଣବନ୍ତୀଟିଏ ବା କାହୁଁ ପାଇବେ ? ମହାନ୍ତିଏ ସକାଳୁ ଉଠି ଦୁଇ ଜଣ ମାନିଆ ଚାଉଳ ମାଣରେ ଠିକ୍ କଣ୍ଠରେ ମାପି ଦେଇ ଯାନ୍ତି । ମାଳତୀ ଆପଣା ପେଟରୁ କାଟି ସେଥିରୁ ମୁଠିଏ ଚାଉଳରେ ବାପା ସଞ୍ଜବେଳେ ବଳବାହୁଡ଼ା ଖାଇବ ବୋଲି ଟୋଟିଏ ସାନ ପୋଡ଼ାପିଠା, ନୋହିଲେ ପଖାଳ ମୁଠିଏ କରି ରଖି ଦେଇଥାଏ । ମହାନ୍ତିଏ ଚାଉଳ ମାପ ଦେବାବେଳେ ଗୋଟିଏ ଖୁବ୍ ସାନ ଶାମୁକାରେ ଲୁଣ ମାପି ଦିଅନ୍ତି । ବାଡ଼ିର କଖାରୁ ଗଛଟିରେ ବର୍ଷକ ତରକାରି ଚଳେ । କଖାରୁ ପାଚିଲେ ମହାନ୍ତିଏ ନିଜେ ଗଛରୁ ପାଚି, ଖୋଷା ଛଡ଼ାଇ, ଯାରୁ କାଢ଼ି, ମାଠିଆ ମାଠିଆ ପୂରାଇ କୋଳପଘରେ ରଖି ଦେଇଥାନ୍ତି । ସେଥିରୁ ବାପ ଝିଅଙ୍କ ପାଇଁ ଠିକ ଦୁଇ ଫାଳ କାଢ଼ି ଦିଅନ୍ତି । ମାଳତୀଟି ବଡ଼ ଦୟାବତୀ, ବାପାକୁ ବଡ ଭଲ ପାଏ । ଏକା ବାପା କାହିଁକି, ସମସ୍ତଙ୍କୁ ଭଲ ପାଏ । ଗୋଟିଏ ବିରାଡ଼ି ପିଲା ପୋଷିଛି, ଯେଇଟି ତାହାର ନିର୍ଜନ ଘରେ ସଙ୍ଗିନୀ—ସବୁବେଳେ ଲାଞ୍ଜ ଟେକି ମ୍ୟାଉଁ ମ୍ୟାଉଁ କରି ଗୋଡ଼ରେ ଘଷି ହେଉଥାଏ । ମାଳତୀ ସେଟାକୁ ଆପଣା କଂସାରେ ଖୁଆଏ, ପାଖରେ ଶୁଆଏ । ବାପା କଞ୍ଚା ଲଙ୍କାମରିଚ ଭଲପାଏ । ଯୋଡ଼ିଏ ଲଙ୍କାମରିଚ ଗଛ ମୂଳିଆ ଢଠାଇ କୁଆଡ଼ୁ ଅଣାଇ ନିଜେ ଅଗଣାରେ ପୋତିଛି । ଖରାଦିନେ ଗାଁ ମଝି ପୋଖରୀରୁ ପାଣି ଆଣି ଗଛ ମୂଳରେ ଢାଳେ । ମାଳତୀ ଉପର ଓଳି ପାଣିପାଇଁ ଯାଇ ପୋଖରୀକୂଳରୁ ମଦରଙ୍ଗା, ସୁନୁସୁନିଆ, ହିଡ଼ମିଚୁ, କଳମ୍ବ, ପିତାଶାଗ ଯେଉଁ ଦିନ ଯାହା ହାତରେ ପଡ଼େ, ମୁଠିଏ ତୋଳି ଆଣେ, ଖାଲି ବାପାପାଇଁ ସିଝା ସିଝି କରି ରଖେ ।

ମଣସଲ ଗାଁରେ ଯାହାକୁ ଥିଲାବାଲା ଲୋକ କହନ୍ତି, ମାଧ ମହାନ୍ତିଏ ବ ସେହିଭଳିଆ ଜଣେ । ସରବର ଦୁଇ ବାଟିଯାଏ ହାତଗୃଷ, ଭାଗରେ ବ ବାଟିଏ ଖଣ୍ଡେ ଦେଇଛନ୍ତି । ଲଅଟା ହଳ, ମାଈ ଗୋରୁ ବ ଗୃରି ବୋଡ଼ି ସଣକ । ଗାଈ ଦୁହାଁଳ ହେଲେ ଦୁଧଯାକ ଗଉଡ଼ କାଠରେ ଦେନଯାଏ ।

ମହାନ୍ତିଙ୍କର ଖରଚ ବୋଇଲେ, ଧାନ ବକ ଖଜଣା ଗଣ୍ଡାକ ଚଳାଇ ଦଅନ୍ତି । ଆଉ ପଇସା କଉଡ଼ିର ଖରଚ ନାହିଁ । ବାଡରେ ଖଣ୍ଡେ କପା କରିଛନ୍ତି, ବାପ ଝିଅଙ୍କର ଲୁଗାବାଡଟା ଚଳିଯାଏ । ବେଜାପ୍ସ ଖରଚ ମଧ୍ୟରେ ପିଲାଦିନରୁ ପିକା ଟଣଟା ଅଭ୍ୟାସ, ଗୁଡ଼ିପାରୁ ନାହାନ୍ତି । ଦେଢ଼ିଜନା ଅଧସେର ଧାନରେ ଧୂଆଁପତ୍ର ଗୋପିଆ ଦେକାନ ପାଖରୁ ଆସେ । ସବୁବେଳେ ପିକାଟା ମୁହଁରେ ଲଗିଥାଏ । ଗୋଟାଏ ଲମ୍ବ ମୋଟା ନଆଁ ବଡ଼ିଆ ପାଖରେ ପଡ଼ିଥାଏ । କୁଆଡ଼କୁ ଗଲେ ବଡ଼ିଆଟି କାଖେଇ ବାହାରନ୍ତି । ମାଳଝିଟା ଏବେ ବଳେଇଲାଣି । ଏଣିକ ବାହା ନ ଦେଲେ ନୁହେ । ପାଞ୍ଚ ଜାଗାରୁ ଜବାବ ଆସିଲାଣି, ହେଲେ ଦର ପଟୁନାହିଁ । ତିନିଶ ଟଙ୍କାରୁ ଉପରକୁ କେହି ଦିବାକୁ ନାହିଁ । ମହାନ୍ତିଏ ବଡ଼ ଧର୍ମବନ୍ତ ଲୋକ, ଏକା ର ଧରିଛନ୍ତି, ସାତ ଶହରୁ ପଇସାଏ ବ ଊଣା ହେବ ନାହିଁ । ନ’ ବର୍ଷର ବଡ଼ ଝିଅଟା ହେଲା ସାତ ଶହ, ପନ୍ଦର ବର୍ଷର ଝିଅ—ଦେଖ ତ, କେଡ଼େ ସୁନ୍ଦରୀ, କମିତ ପାଇଟିକୁ ଯୋଗା ! ଦେଖି ଗୃହିଁ ବୁଝି ସମଜ କଥା କହିଲେ ସିନା ହେବ ? ଯେଉଁ-ମାନେ ବାହା ପ୍ରସଙ୍ଗରେ ଆସନ୍ତି, ସେମାନଙ୍କୁ ଏହି ଏକା ଜବାବ ।

ମହାନ୍ତିଏ ବୁଝିଲେଣି, ଦୋହଳ ଚେହଳ କେହି, ଖୁବ୍ ବୁଢ଼ା ବର ନ ହେଲେ ଦର ପଟିବ ନାହିଁ । କନ୍ୟାପାଇଁ ଏହିପରି ଯୋଗା ବର ସକାଶେ ବାଟ ଗୃହିଁ ବସିଛନ୍ତି ।

ମଧୁପୁର ଗାଁଟା ଗୋପାଳଜୀଉଙ୍କର ଦେବୋତ୍ତର । ମଠଟି ଗାଁ ମଝିରେ । ଆଉ ଆଡ଼େ ବ ଜମି ଜମା ଅଛି । ସେ ସବୁ ଜମିର ଖଜଣା ଫାଉ ଫୌଗନ୍ଦ, ଶିଷ୍ୟ ସେବକ ସବ୍ ସବୁ ରକମରୁ ବର୍ଷକୁ ଦଶହଜାର ଟଙ୍କା ସରକ ଆପ୍ତ । ଏଟା ନଅଙ୍ଗ ମଠ, ଗୋଟାଏ ମହନ୍ତ ନାରାୟଣ ପାଇଲେ ତାଙ୍କ ଚେଲା ଗାଦିରେ ବସନ୍ତି ।

ମହନ୍ତ ରଘୁବର ଦାସ ନାରାୟଣ ପାଇବାରୁ ତାଙ୍କ ଚେଲା ଲଛମନ ଦାସେ ବର୍ତ୍ତମାନ ଗାଦିର ମାଲିକ । ନୂଆ ମହନ୍ତ ଖୁବ୍ ଦାତା, ଦୟାଳୁ ।

ଆଗ ମହନ୍ତଙ୍କର ସବୁ ଭଲ ଗୁଣ ଅଛି । ଚରିତ୍ରଟି ବି ଖୁବ୍ ଭଲ । ହେଲେ ଟୋକାଳିଆ ବୁଦ୍ଧିଟା ଛାଡ଼ି ନାହିଁ ଆଗ । ପୋଷା ଯାତ୍ରା ଗୋବିନ୍ଦ ଚଢ଼େଇ-ଗୁଡ଼ାକ ରହି ଯାଇଛନ୍ତି । ମହନ୍ତ ମଠରେ ଗୋଟାଏ ଆଖଡ଼ା ଜାରି କରିଛନ୍ତି । ସଞ୍ଜ ବାଜିଲା ତ, ଗାଁର ଯେତେ ଭେଣ୍ଡିଆ ପିଲା ରୁଣ୍ଡ । କୃଷ୍ଣଲୀଳା, ରାମଲୀଳା, ଯାତ୍ରା ହୁଏ । ଆଖଡ଼ା ମଧ୍ୟରେ ବଡ଼ ବଡ଼ ଦଶଜଣ ଭେଣ୍ଡିଆ ଅଛନ୍ତି । ରାତି ଛଅ ଘଡ଼ି ସରିକି ମହାପ୍ରଭୁଙ୍କ ଠା ଘଣ୍ଟା ବାଜେ, ଆଖଡ଼ା ଭାଙ୍ଗେ । ପ୍ରସାଦ ସେବା କରି ଯେ ଯାହା ଘରକୁ ଚାଲିଗଲା ବାଦ ମହନ୍ତ ସେହି ବଡ଼ ସାଙ୍ଗୀ ଦଶ ଜଣଙ୍କୁ ଧରି ମଠ ପଛ ବଗିଚା ମଝିରେ ଥିବା ପୋଖରୀ ଘାଟରେ ବସି ଅଧ-ରାତିଯାଏ ଭୂରିଚାନନ୍ଦ * ମୌଜ କରନ୍ତି, କୋଡ଼ିଏ ମୂଲକର ହାଲଚାଲ କଥା ପଡ଼େ ।

ମହନ୍ତ ହେଉଛନ୍ତି ଗାଁର ଜଜ, ମେଜେଷ୍ଟର, ମହାଜନ ସବୁ । ଏ ଗାଁରୁ ଗୋଟାଏ ବୋଲି ମାଲି ମାମଲା ସରକାରକୁ ଯାଏ ନାହିଁ ।

ମହନ୍ତଙ୍କର ଗୋଟିଏ କୋଠଚାକର ଅଛି, ନାମ ବିନୋଦିଆ—ବୟସ ବାଇଶ କି ତେଇଶ । ଦେଖିବାକୁ ବେଶ୍ ଡ଼ଉଲ ଡ଼ାଉଲ । ବିନୋଦିଆ ମହନ୍ତଙ୍କର ଖାସ ବିଶ୍ୱାସୀ ଚାକର । ମହନ୍ତଙ୍କ ନିଜ କୋଠଘର କଞ୍ଚି, ମନ୍ଦିର ସରଘର, ଚାନ୍ଦାଘର, କାରବାରଘର ସବୁଘର କଞ୍ଚି ତା' ହାତରେ । ଗୋଟାଏ ସରୁ ଲୁହା ଶିକୁଳିରେ ଗୁନ୍ଥା ବେକାଏ କଞ୍ଚି ସବୁବେଳେ ତା' ଅଣ୍ଟାରେ ଝୁଲୁଥାଏ । ସବୁ ବିଷୟରେ ମହନ୍ତଙ୍କର ବିନୋଦିଆ ଉପରେ ଷୋଳପଣ ବିଶ୍ୱାସ । ଯେପରି ମାଲି ମାମଲା ହେଉ, ବିନୋଦିଆକୁ ନ ଧରିଲେ କେହି ମହନ୍ତଙ୍କ ଠାରୁ ବେଗି ବେଗି କାମ ହାସଲ କରିପାରେ ନାହିଁ ଶ୍ରୀଜୀଉଙ୍କ ଅଳଙ୍କାର, ନଗଦାତ ଟଙ୍କା, ଟିପ ତମସୁକ, ମହନ୍ତଙ୍କର ନିଜ ତହବିଲ, ସବୁ ସବୁ ରକମରେ ବିନୋଦିଆ ଜିମାରେ ଲକ୍ଷାବଧି ଟଙ୍କା । ନେଇ ବସିଲେ ମାଲି ମାମଲାରୁ ବି ଢେର ଢେର ଟଙ୍କା ପା'ନ୍ତା । ମାତ୍ର ତାହାର ଦରମା ମାସକୁ ଯୋଡ଼ାଏ ଟଙ୍କା ଛଡ଼ା ଆଉ ଯୋଡ଼ାଏ ପଇସାରେ ବି ହାତ ଦିଏ ନାହିଁ । ଏଣେ ମହନ୍ତଙ୍କର ଯେପରି ଅକାରଣ ପଇସାଏ ନଷ୍ଟ ନ ହେବ, ଖୁବ୍ ଜଗିଥାଏ । ପ୍ରଜା ଖାତକ ଉପରେ ହକ ପାଉଣା ପଇସାଏ ଛାଡ଼ିବ ନାହିଁ, ମହନ୍ତ ହୁକୁମ କଲେ ବି, ନା । ବିନୋଦିଆ ଘର ହାଟଗାଁ । ମନ୍ଦିର ଠାରୁ ଚାରି କୋଶ ଦୂର । ସେ ଗାଁଟା ବି ମହନ୍ତଙ୍କର ଦେବୋତ୍ତର

*ଗଞ୍ଜାଇ ଭାଙ୍ଗ ।

ବାହେଲ । ମା, ବାଧିକା ପଡ଼ିଛି ଶୁଣି ବଟନୋହଆ ମହନ୍ତ ମହାରାଜାଙ୍କଠାରୁ ଗୃହବନର ଛୁଟି ନେଇ ଘରକୁ ଯାଇଥିଲା । ଆଜ ସଞ୍ଜାକୁ ଘରୁ ଆସି କୁନିଟି ହୋଇ ବସିଛି, କାମ ପାଇଁଟିରେ ମନ ଦେଉ ନାହିଁ । ମହନ୍ତ ପଗୃଚଲେ, "କ ରେ ବନୋହଆ, ଇମିତି ହୁଙ୍କାନା ପର ବସିଛୁ କାହିଁ ? ଯା ଯା, ଛୋଟାଳଆ ସବୁ ଆସି କାମରେ ଲାଗିଗଲେଣି କ ନା, ଦେଖ ଯା ।"

ବନୋହଆ ମହନ୍ତଙ୍କ ଗୋଡ଼ ଯୋଡକ କୁଣ୍ଢେଇ ଧରି ଭୋ ଭୋ କର ରଡଗ୍ଭଡଲା, କଥା କହିପାରୁ ନାହିଁ ।

ମହନ୍ତ—ଆରେ କଥା କ'ଣ କହ, ଇମିତିକାଠା କାନ୍ଦୁଛୁ କାହିଁ ?

ବନୋହଆ—ଆଜ୍ଞା ! ମୁଁ ଆଉ ଗୃକ ? କରିବ ନାହିଁ । ଆମ ଗାଁର ଢେ଼ର ଟେଣ୍ଡିଆ ରେଲବାଇରେ କାମ କର ଢେ଼ର ଢେ଼ର ଠଙ୍କା ଆଣୁଛନ୍ତି ମା କହିଲା , ମୁ ସେଠିଅର କାମ କର ଠଙ୍କା ଆଣି ବାହା ହେବ । ମା କହିଲା ସେ ବାଧିକା ପଡ଼ିଲାଣି, ମରିଯିବ—ବୋହୂ ଦେଖିବ ।

ମହନ୍ତ—ହୋଃ ହୋଃ ହୋଃ—ଏଇ କଥା ! ଆଚ୍ଛା ମୁଁ ବାହା କରେଇ ଦେବ । ଖୁବ୍ ଭଲ କନ୍ୟାଟିଏ ବାହା କରେଇଦେଲେ ତ ହେଲା ?

ବନୋହଆ—ଆମ ଜାତିରେ କନ୍ୟାବୁନା ଢେ଼ର ଠଙ୍କା ପଡ଼େ, ମୁଁ ଠଙ୍କା କାହୁଁ ଆଣିବ ?

ମହନ୍ତ—ଆରେ ବାପୁ ! ତୁ ତ ବାହା ହେବୁ ଗଲା, ଠଙ୍କାରେ କ'ଣ ଅଛି ? ଆଚ୍ଛା, ଯେତେ ଠଙ୍କା ଲାଗିବ, ମୁଁ ଦେବ ।

ବନୋହଆ ଭାର ଖୁସିଆଏ ହୋଇ ଆପଣା କାମରେ ଲାଗିଗଲା ।

ପଦ୍ମ ଭଣ୍ଡାରୁଣୀ ବଧବା—ଘରକୁ ଏକୁଟିଆ । ଗୋଟିଏ ବୋଲ ଝିଅ ଥିଲା, ପାଞ୍ଚବର୍ଷ ହେଲା ବଣ୍ଢ ହୋଇଯାଇ ଶାଶୁଘରେ ଅଛି । ଗାଁ ମଝିରେ ଘର । ହେଲେ ତାର ବଡ଼ ଗ୍ରୁତି, ଘରେ ଏକୁଟିଆ ଥାଏ, କାହାରିକୁ ଡରେ ନାହିଁ । ଗାଁ ଗୋଟାକ ଖଟେ । ମାଇକିନିଆମାନଙ୍କ ନଖ କାଟେ, ଗୋଡରେ ଅଳତା ଲଗାଇଦିଏ । ପଦ୍ମର ବୁଦ୍ଧି ଖୁବ ଠାଣ, ପୁଣି ପାଞ୍ଚ ମାଇକିନିଆଙ୍କ ସଙ୍ଗରେ ରଞ୍ଜାଘଷ ଥିବାରୁ ସେ ଭାରି ପଟୁ ହୋଇଯାଇଛି । ସାକୁଲା ସାଲୁଲ କର ଗାଁ ଗୋଟାକ ମାଇକିନିଆଙ୍କୁ ପଟେଇ ରଖିଛି । ତାକୁ ସମସ୍ତେ ଭଲ ପାନ୍ତି । ଆଉ କଥା ଯାହା ହେଉ, ତାର ମନ୍ଦ ଆଚରଣ ବୋଲି କେହି କେବେ ପଦେ ବୋଲି କହି ନାହିଁ ।

ଆଜି କେତେଦିନ ହେଲା ସଞ୍ଜ ସକାଳ ସବୁବେଳେ ମଠକୁ ଯାଆସ କରୁଥିବାର ଦେଖାଯାଉଅଛି । ମାଧ ମହାନ୍ତ ଘରେ ନ ଥିବାବେଳେ ପଘା ତାଙ୍କ ଘରକୁ ପଶିଯାଏ । ମହାନ୍ତଙ୍କ ଘର ଭିତରେ କେହି ଯେମନ୍ତ ତାକୁ ଗୃହିଁ ବସିଥାଏ, କବାଟରେ ହାତ ମାରିବାକ୍ଷଣି ଉଦୁଆଁ ହୋଇଯାଏ ।

ପଘା ମାଳଣ୍ଡିକୁ କୁଣ୍ଢେଇ ପକାଇ "ମା ରେ—ସୁନା ରେ—ଗୁନ୍ଦ-ମଣିରେ—ମୋ ଝିଅଖଣ୍ଡ ଶାଶୁଘରକୁ ଯିବା ଦିନରୁ ଅନ୍ଧୁଣୀ ହୋଇ ବସି-ଥିଲି ରେ—ଦାଣ୍ଡ ଘାଟରେ ତତେ ଦେଖି ନେଇ ପଦାଏ କରୁଥିଲି ରେ । ଗାଁରୁ ଶୁଣିଲି, ତୁ କୁଆଡେ ବାହା ହୋଇ ଯାଉଛୁ, ତତେ ଥରେ ଦେଖି-ବାକୁ ଅଇଲି ରେ ।" ମାଳଣ୍ଡି ହାତରେ ମୁଠାଏ ଅନ୍ନ ମହାପ୍ରସାଦ ଗୁଞ୍ଜି ଦେଇ କହିଲା, "ଆଜି କତିରୁ ତୁ ମୋ ଝିଅ, ମୁଁ ତୋ ମା ।"

ମାଳଣ୍ଡି ଆଦର କଥା, ସ୍ନେହ କଥା, କଅଁଳ କଥା ପଦେ ହେଲେ କେବେ ଶୁଣି ନାହିଁ । ଏତେ ସ୍ନେହ କଥା ଶୁଣି ସମ୍ଭାଳି ହୋଇ ପାରୁ ନାହିଁ । ପଘାକୁ କୁଣ୍ଢେଇ ପକାଇ ଭେ ଭେ ରଡ଼ି ଛାଡ଼ୁଛି । ଘଡ଼ିକ ବାଦେ ଧକେଇ ଧକେଇ କହିଲା, "ମା, ମୁଁ ଆଉ କିଛି ମାଗୁ ନାହିଁ, ତୁ ବେଳେ ବେଳେ ମୋ' ପାଖକୁ ଆସୁଥିବୁ, ପଦେ ପଦେ କଥା କହି ଯାଉଥିବୁ । ବାପା କେବେହେଲେ ମତେ ପଦେ ଭଲ କଥା କହେ ନାହିଁ, ଟିକିଏ କଥାରେ ଭୁଲ୍ଲା ରଗିଯାଇ 'ଦୂର ଦୂର । ପୋଡ଼ାମୁହିଁ ବେଲାଏ ବେଲାଏ ଠୁଙ୍କୁଥିବୁ, ବସିଥିବୁ,' ଏମିତି ଗାଳିଦିଏ । କାଲି ଢେର ଗାଳି ଦେଲା । ଧୂଆଁପତ୍ର କିଣିବା ଲାଗି ଧାନ କାଢ଼ି ଦେଲି ନାହିଁ, ଖଳାରେ ଯେ ଅଗାଡ଼ି ଜମା ହୋଇଛି, ତାକୁ ପାଛୁଡ଼ି ଧାନ କାଢ଼ି ଧୂଆଁପତ୍ର ଦୋକାନରୁ ଆଣିବାକୁ କହି ଯାଇଥିଲା । ଅଗାଡ଼ି ତିନିଥର ପାଛୁଡ଼ିଲଣି । କାଲି ଢେର ପାଛୁଡ଼ିଲି, ମୁଠାଏ ବି ଧାନ୍ ବାହାରିଲା ନାହିଁ । ବାପା ଆସି ଢେର ଗାଳିଦେଲା ।" ଏହି କଥା କହିସାରି ମାଳଣ୍ଡି ଧକେଇ ଧକେଇ ଢେର କାନ୍ଦିଲା ।

ପଘା ମୁହଁ ପୋଛିଦେଇ କହିଲା, "ନା ମା, ଆଉ କାନ୍ଦ ନା, ଗୋପାଳଜୀ ମହାପ୍ରଭୁ ତତେ ରାଣୀ କରିବେ । ମୁଁ ରୋଜ ସଞ୍ଜବେଳେ ତୋ' କଥା ପ୍ରଭୁଙ୍କୁ ଜଣାଉଛି । ତୁ ଦେଖୁ ନାହୁଁ, ମୁଁ ଏବେ ମଠକୁ ଏତେ ଯା-ଆସ କରୁଛି କାଁ'ା ? ତୁଚ୍ଛା ତୋ' ଲାଗି ।"

ମାଳତୀର ବାହା ଲାଗି ମହାନ୍ତ୍ରଏ ଏବେ ଅଥୟ ହେଲେଣି । ଏଡ଼େ ଝିଅଟାକୁ ଘରେ ରଖିଛୁ, ସମସ୍ତେ ଛି ଛି କରି କରୁଛନ୍ତି । ଢେର ଜାଗାରୁ ବାହାନ ଆସିଲଣି । ହେଲେ ଦର ପଟୁ ନାହିଁ । ମହାନ୍ତ୍ରଏ ମନରେ ହିସାବରେ କଲେ, ପନ୍ଦର ବର୍ଷର ଝିଅଟା ତ, ଅଡ଼ ନିକୁଞ୍ଜରେ ପାଞ୍ଚ ଛ' ଶହ ଟଙ୍କା ଖାଇଗଲାଣି, ତିନିଶହ ଟଙ୍କାରେ ଦେଲେ ଲାଭ ଥାଉ, ମୂଳରୁ ଟେକ୍ ଠୋକ୍ ଦୁ' ତିନି ଶହ ଟଙ୍କା ଲୋକସାନ ! ମନରେ ସ୍ଥିର କଲେ, ସାତ ଶହ ଟଙ୍କାରୁ ଊଣା କନ୍ୟାସୁନା ହେଲେ ଝିଅକୁ ଛାଡ଼ିବେ ନାହିଁ, ଝିଅ ପଛକେ ଦରବୁଢ଼ୀ ହୋଇ ଘରେ ବସିଥାଉ । ଘର କାମ ପାଇଁ ଆଉ ଗୋଟାଏ ଆସିଲେ ଖାଆନ୍ତା, ନୋହିଲା ଏଇଟା ଖାଇଲା । ଲୋକେ ନିନ୍ଦା କରୁଛନ୍ତି, କରନ୍ତୁ, ଲୋକ କଥାରେ କ'ଣ ଅଛି ? ସେଥିଲାଗି କ'ଣ ଏତେ ଟଙ୍କା ଲୋକାସାନ ସହିବ ?

ମହାନ୍ତଙ୍କର ଏବେ ଦିନରାତି ଚିନ୍ତା, କେବେ ସାତ ଶହ ଟଙ୍କା ଘରେ ପଶିବ ! ଦିନେ ତାଙ୍କ ମନ ଡ଼ାକିଲା, ମାଳତୀ ମୁହଁଟା ଟିକିଏ ଅଧିକ ସୁନ୍ଦର ଦିଶିଲେ କନ୍ୟାସୁନା ବାଢ଼ି ବଢ଼ିବ ପରା ! ପାଟି କରି ଡ଼ାକିଲେ, "ଆଲୋ ମାଳତୀ ! ଶୁଣ ଶୁଣ, ଏହି ·ନେ ମାଣେ ଧାନ, ଗୋପୀ ସାଉ ଦୋକାନରୁ ହଳଦୀ ତେଲ କିଣି ଆଣ । ହଳଦୀ ବାଟି ରଖିଥିବୁ, ଅଳ୍ପ ମୁନ୍ଦାଏ ତେଲ ମିଶାଇ ଦେବୁ, ଦାଣ୍ଡକୁ ବାହାରିଲା ବେଳେ ସେହି ହଳଦୀ ଟିକିଏ ମୁହଁରେ ମାରି ଦେଇ ବାହାରିବୁ । କେହି ବାହା ବାହାନିଆ ଆସିଲେ ମୁହଁରେ ଟିକିଏ ବେଶି କରି ହଳଦୀ ବୋଳିଦେବୁ । ବୁଝି ଖବରଦାର ! ଆଇଲା ସାଇଲା ଖରଚ କରିବୁ, ଏଇ ହଳଦୀ ତେଲ ଯେମିତି ପୂରା ମାସେ ଯାଏ ।"

ମାଳତୀ ମୁଣ୍ଡ ପୋତି ଦେଇ ବାପାର କଥା ସବୁ ଶୁଣିଲା—କଣ ତା ମନକୁ ଆସିଲା, ଘର ଭିତରେ ଅନ୍ଧାର କୋଣିଆ ବସି "ମା ! ମା !" କହି ଢେର ବେଳଯାଏ କାନ୍ଦିଲା । ମାଳତୀ ଢେର ଥର ଏହିପରି ବସି କାନ୍ଦେ, ଆପେ ତୁନି ହୁଏ ।

ସକାଳଓଳି ଦିନ ଘଡ଼ିକ ବେଳେ ମହାନ୍ତ୍ରଏ ଆଗ ଦାଣ୍ଡ ପିଣ୍ଡାରେ ବସି ପିକା ବଳୁଛନ୍ତି, ହଳ କାମ ଦେଖିବାକୁ ବାହାରିବେ । ଟିକିଏ ଆଡ଼େଇ ଅନାଇ ଦେଲେ, ଯୋଡ଼ିଏ ବାଟୋଇ ବୁଢ଼ା ବେଢ଼ା ଉପରକୁ ଉଠୁଛନ୍ତି ।

ବାଟୋଇମାନେ ଧୋବଧାବଳିଆ ଭଲଲୋକ ପରି ଦଶିଲେ । ମହାନ୍ତିଏ ମନରେ କଲେ, କେଜାଣି ଧୂଆଁପତ୍ର ମାଗିବେ ପରା ! ପାଖରେ ଟିକିଏ ଧୂଆଁପତ୍ର ପଡ଼ିଥିଲା, ଚଞ୍ଚଳ ଅଣ୍ଟାରେ ଖୋସିଦେଲେ ।

ଆଗ ବାଟୋଇ—ଆହେ ! ଏଇଟା କ'ଣ ମାଧ ମହାନ୍ତିଙ୍କ ଘର ?

ମହାନ୍ତିଏ—କିଁଆ ? କଣ ବୋଲି ଯାଆନ୍ତୁ ।

ବାଟୋଇ—ଆମ୍ଭେମାନେ ମଙ୍ଗଳକୃତ୍ୟ ପ୍ରସଙ୍ଗରେ ଆସିଛୁଁ—ଆପଣ କଣ ମାଧ ମହାନ୍ତିଏ ?

ମହାନ୍ତିଏ—ଆସିବା ହେଉ, ବସିବା ହେଉ । ଚଞ୍ଚଳ ଘର ଭିତରୁ ଆଣି ଦୁଇଖଣ୍ଡ ପଲଣ ତାଟ ପାରିଦେଲେ । ବାଟୋଇମାନେ ବସିବାରୁ ମହାନ୍ତିଏ ଏକାବେଳକେ କଥା ଆରମ୍ଭ କରିଦେଲେ । ବୁଝିବା ହେଲେ, ଢେର ଢେର ଆଉ ଢେର ଢେର ଲୋକ ଅଇଲେ—ଗଲେ, କଥା ପଟିଲା ନାହିଁ । ବୁଝିବା ହେଲେ—ଏଁ—ବୁଝିବା ହେଲେ—ନାହିଁ, ନାହିଁ, ଆଗେ କନ୍ୟାଟି ଦେଖନ୍ତୁ, ମନ ମାନେ, ପଛକେ ଦେବା ନେବା କଥା । ଆଲୋ ମାଳଶ୍ରୀ ! ଏହି ଭଲଲୋକେ ଆସିଛନ୍ତି, ଅଗଣାରେ ଛିଡ଼ା ହୋଇଯା ତ ! ଆଲୋ, ମୁଁ ଯାହା କହୁଛି—ଏଁ, ବୁଝିଲୁଟିକି ?

ଭଲଲୋକେ—ନାହିଁ ନାହିଁ ମହାନ୍ତିଏ, ଦେଖିବା ଲୋଡ଼ା ନାହିଁ—ତୁମ କନ୍ୟାର ରୂପ ଗୁଣ କଥା ଭଲ ଜଣାଅଛି । ସେଇଥିଲାଗି କୁଆଡ଼େ ନ ଯାଇ ସଳଖେ ତୁମ ଦୁଆରକୁ ଅଇଲୁଁ ପରା !

ମହାନ୍ତିଏ—ତେବେ ଗୁଡ଼ାଏ ବକର ବକର ହେଲେ କ'ଣ ହେବ, ଆମର ତ ସାଫ ଏକା କଥା । ଗୋଟିଏ ସ—ବୁଝନ୍ତୁ କନ୍ୟାସୁନା ଠିକ୍ ସାତ ଶହ ଟଙ୍କା । ପଇସାଏ, ଅଧଲାଏ, ଛଦାମ ବି ଊଣା ନୁହେଁ ।

ଭଲଲୋକେ—ଅନ୍ୟାୟଟା କଣ କହିଲେ ? କନ୍ୟା ରୂପ ଗୁଣକୁ ଅନାଇଲେ ଠିକ୍ ଦରଦାମ ହୋଇଛି । ଆମ ଜମିଦାର ବି କହିଥିଲେ, ଆପଣ ବିଚାର କରି ଯାହା କହିବେ, ସେଥିରୁ ସେ ବାହାର ହେବେ ନାହିଁ ।

ମାଧ ମହାନ୍ତି—ଏଁ—ଏଁ ବର କଣ ଜମିଦାର ? କେଉଁଠି ତାଙ୍କ ଜମିଦାରୀ ?

ଭଲ ଲୋକେ -- ବରଙ୍କ ନାମ ଶ୍ରୀ ଶ୍ରୀ ବିନୋଦବିହାରୀ ଗନ୍ଧାଘରରାୟ । ତାଙ୍କ ଘର ମିଛୁପୁରୁ, ଜମିଦାରୀ ତାଲୁକେ ଆକାଶପୁର ।

ମାଧ ମହାନ୍ତ -- ଦଣ୍ଡେଯାଏଁ ଗୁମ୍ ମାରି ବସି ବିଚାର କଲେ -- ହାୟ ହାୟ ! ଏ ବରଟା ବଡ଼ଲୋକ, ହଜାରେ ଟଙ୍କା ଧରିଥିଲେ ଦେଇ ପକାଇଥାନ୍ତା । କାହିଁକି ହଜାରେ ଡାକଦେଲି ନାହିଁ ? ପ୍ରକାଶ୍ୟରେ କହିଲେ -- ଆମ ଜାତିଆଣ ବେଭାରଟା ତ ଜାଣନ୍ତି, ବିଭା ଲଗୁଡ଼ି ଉଣା ପୂରା ତିନଶ ଟଙ୍କା । ଆପଣ ତ ବିବେକୀ ଲୋକ, ଜାଣନ୍ତି । ଏଇଟା ବର ପିଠିରୁ ଦେବାକୁ ପଡ଼ଇ ।

"ଅବଶ୍ୟ ଅବଶ୍ୟ, ଏକଥାଟା କଣ କହିବାକୁ ହେବ ? ସେଇଟା ତ ବର ପିଠିରୁ ଦେଣ ।"

ମାଧ ମହାନ୍ତ -- କଥା ଛିଡ଼ାଇ ରଖିବା ଭଲ । ଏହି ଦେଖନ୍ତୁ, କନ୍ୟା ସୁନା ଆଉ ବିଭା ଲଗୁଡ଼ି ଦୁଇ ପଦକୁ ହେଲା ହଜାରେ -- ବର ଯିମିତି ପହଞ୍ଚିବେ, ଆଗେ ଟଙ୍କା ଗଣିଦେବେ, ପଛକେ ବାଟବରଣ ହେବ । କଥାଟା ଭଲ କରି ମନରେ ରଖିଥିବେ ।

ଭଲଲୋକ -- ଏଇଟା ତ ମାମଲତି କଥା, ସଂସାର ବିଧି, ଆପଣଙ୍କୁ କହିବାକୁ ହେବ ନାହିଁ । ଦଶ ଜାଗାରେ ଏହିପରି ହେଉଛି, ଆଜି କଣ ନୂଆ ଗୋଟାଏ କଥା ହେବ ?

ମାଧ ମହାନ୍ତ -- ଠିକ୍ ଠିକ୍, ଆପଣ ବିବେକୀ ଲୋକ, ମାମଲତକାର ଆପଣଙ୍କୁ ବଳି ମାମଲତକାର ଆଉ କିଏ ଅଛି ? ଆଉ ଗୋଟିଏ କଥା -- ବିଭାଘର ଆୟୋଜନ କରିବାକୁ ହେବ, ଗୋଟା କୋଡ଼ିଏ ଟଙ୍କା ଚଞ୍ଚଳ ଲୋଡ଼ା । ଏଁ -- ଏଁ -- ଆପଣଙ୍କୁ କଣ କହିବି -- ଏ -- ଏଁ ।

ମହାନ୍ତଙ୍କ ମୁହଁ କଥା ମୁହଁରେ ଅଛି, ଭଲଲୋକ ଅଣ୍ଟାରୁ କାଢ଼ି ଅଗଣା ଅଟେପାଛୁ ମୁଠାଏ ଟଙ୍କା ଝଣ କରି ମହାନ୍ତଙ୍କ ଆଗକୁ ଫୋପାଡ଼ି ଦେଲେ । ଏଁ -- ଏଁ କହି ମହାନ୍ତଏ ଚଞ୍ଚଳ ଦୁଇ ହାତରେ ଟଙ୍କାଗୁଡ଼ାକ ଓଗାଟେଇ ପକାଇଲେ, ଲୁଗା ଭିତରେ ଏକ ଦୁଇ କରି ଗଣିଗଲେ କୋଡ଼ିଏ ପାଞ୍ଚ । ଆନନ୍ଦଟା ମନରେ ସମ୍ଭାଳି ହେଉ ନାହିଁ । ମନରେ କଲେ ଏତେଦିନେ କପାଳ ଫିଟିଲା । ଏଣୁତେଣୁ ପାଞ୍ଚକଥା ଉତ୍ତାରେ ଏକାବେଳକେ ବିଭାଘର ଦିନ ସ୍ଥିର ହୋଇଗଲା । ଆସନ୍ତା ମକର ସତରଦିନ, ଶୁକ୍ରବାର ଶୁକ୍ଳ ସପ୍ତମୀ ।

ଭଲଲୋକ ଅନାଇ ଦେଖିଲେ, କବାଟ ତଳ ଫାଙ୍କ ଭିତରକୁ ଯୋଡ଼ାଏ ପାଦ ସ୍ଥିର ହୋଇ ରହିଛି । ପାଦ ଯୋଡ଼ିକର ଉପର ପାଦୁଲି ଚମ୍ପାକଢ଼ି ପରି ଗୌରବର୍ଣ୍ଣ, ଦଶଟି ଆଙ୍ଗୁଳି ଦିଶୁଛି ।

ଭଲଲୋକ ଟିକଏ ବଡ଼ ପାଟିକରି କହିଲେ — ବୁଝିବା ହେଲେ ମହାନ୍ତିଏ, ଆମେ ତ କନ୍ୟା ରୂପ ଗୁଣ କଥା ସବୁ ବୁଝିଗଲୁଁ, ଗାଁରେ ଯାଇ କହିବୁଁ । ଆପଣ ତ ବରଙ୍କକଥା କିଛି ଶୁଣିଲେ ନାହିଁ ? ଆମର କହିଦେବା ଉଚିତ ହେଉଛି । ବରଙ୍କର ପ୍ରଥମ ଦୁଇ ବାହାସ୍ତିରୀ ମରିଛନ୍ତି,ଏଇଟା ହେବ ତେହଲା ବାହା । ବରଙ୍କର ବୟସ ଏହି ମାଘରେ ପଞ୍ଚଷଠି ପଶିବ ।

ଭଲଲୋକ କବାଟ ପଛରୁ ଫଁ କରି ଗୋଟିଏ ନିଶ୍ୱାସ ଶବ୍ଦ ଶୁଣିଲେ—ପାଦଯୋଡ଼ିକ ଆଉ ଦିଶିଲା ନାହିଁ ।

ମାଧବ ମହାନ୍ତିଏ କହିଲେ,"ଏତେ କଥା କିଏ ପଚାରୁଛି ହେ ? ପୁରୁଷ ପୁଅର ବୟସ କ'ଣ ଧରେଇ ଭିତରେ ? ଅଶୀ ବର୍ଷର ପୁରୁଷ ବି ବାହା ହୋଇପାରେ । ମୂଳ କଥାଟା ବୋଲନ୍ତୁ — ମୁଁ ଏବେ ଆପଣଙ୍କ କଥାରେ ଖାତରଜମା ହୋଇ ରହିଲିଟି ?"

ମଧ୍ୟସ୍ଥ —ମହାନ୍ତିଏ, ଆପଣ ଏଡ଼େ ମାମଲତକାର ବୁଦ୍ଧିମନ୍ତ ଲୋକ ହୋଇ କେମନ୍ତ ଗୋଟାଏ ଅଖାଡ଼ୁଆ କଥା ବୋଲି ବସିଲେଟି ! ଆମ ଜମିଦାର ଘରେ କ'ଣ ଜାଗା ନ ଥିଲା ଯେ, ତୁମ ଆଗରେ ଟଙ୍କାଗୁଡ଼ାଏ ଓଜାଡ଼ି ଦେଇଗଲୁଁ ?

ମହାନ୍ତିଏ ଟିକିଏ ସଙ୍କ୍ପଟି ଯାଇ କହିଲେ, "ନାହିଁ ନାହିଁ, ମୁଁ କହୁଥିଲି କ'ଣ କି, ବାଭାଜନ ଟିକିଏ ଚଞ୍ଚଳ ବରଙ୍କୁ ଅନୁକୂଳ କରାଇ ଦେବେ, ଯେମନ୍ତ ଠିକ୍ ଲଗ୍ନ ବେଳେ ହାତଗଣ୍ଠି ପଡ଼ିବ ।"

ଭଲ୍‌ଲୋକ ଦୁହେଁ ଘଷି ଭକ୍ତିରେ ଯୋଡ଼ାଏ ଦଣ୍ଡବତ କରି ଚାଲିଗଲେ ।

ଆଜି ମାଳଶ୍ରୀର ଆଦର ଦେଖେ କିଏ ! ତୁଚ୍ଛାଟାରେ ହେଲେ 'ଆରେ ମା, ଯା ରେ ମା', କହି ମହାନ୍ତିଏ ଦଶଥର ଝିଅକୁ ଆଦର କରି ଡ଼ାକୁଛନ୍ତି । ମହାନ୍ତିଙ୍କର ଷୋଳପଣି ବିଶ୍ୱାସ, ପୂରା ହଜାରେ ଟଙ୍କା ତାଙ୍କ

ଘରେ ପଶିବ । ମହାନ୍ତଏ ଯେତେ ଆଦରକରି ଡାକୁଛନ୍ତି, ମାଳତୀ ମନରେ ସେତେ କୋହ ଉଠୁଛି । ମହାନ୍ତଏ ଖୁବ ମନଫୁଲଣାରେ ଗଣ୍ଡେ ପାନ ଅଖା, ବାମ୍ପଣ, ଛଣିପୂରା ଧେନା ବଳକୁ ବାହାରିଲେ । ହିଡ଼ ଉପରେ ବସି ମୂଲିଆ-ମାନଙ୍କ କାମ ତନଖି କରିବେ, ଆଉ ଠଙ୍କାରଖା ମୁଣିଟିଏ ସିଇଁବେ ।

ଆଜି ମାଳତୀର ଆଉ ଘରି ଯାଇଟିରେ ମନ ନାହିଁ । ଦାଣ୍ଡ ଦୁଆର କିଳି ଦେଇ କବାଟ ମୂଳରେ ଭୁନହୋଇ ବସି କାନ୍ଦୁଛି । କବାଟ ବାହାରୁ ଠୁକ୍ ଠୁକ୍ ଶବ୍ଦ ହେଲା, ହାତ ବାରି କବାଟ ଫିଟାଇଦେଲା । ପଦ୍ମା ଯିମିତି ଘର ଭିତରେ ପା ଦେଇଛି, ମାଳତୀ ତା' ଦୁଇଗୋଡ଼ ଧରି ଡ଼କାପାରୁଛି, କାନ୍ଦି କାନ୍ଦି ଅଥୟ ହୋଇଗଲାଣି । ପଦ୍ମା ତାକୁ ଯେତେ ଭୁନ କରାଉଛି, ଶୁଣୁଛି କଏ ?

ହାମଦରଦୀ ଲୋକ ପାଖରେ କାନ୍ଦି ମନକଥା କହିଲେ ମନ କଷ୍ଟ ଟିକିଏ ଊଣା ପଡ଼େ । ମାଳତୀ ଯିମିତି ଟିକିଏ ଧୈର୍ଯ୍ୟ ଧରିଛି, ପଦ୍ମା କହିଲା, "ଆରେ ବାପୁଣି ! କଥା ନ ବୁଝି କିଁଆ ଡ଼କା ପାରୁଛୁ ? ଆଜି ଭଲଲୋକ ଆସିବା—ଯେ ସବୁ କଥା ହେଲା, ମୁଁ ସବୁ ଜାଣେ । ସେସବୁ କଥା ଗୋଡ଼ରେ ଘଷିଦେ ମ, ସବୁ ମିଛ, ଭୁଲ୍ଗ ମିଛ । ମୁଁ ଯାହା କହୁଛି, ଶୁଣି ଯା । ଆଜିକି ସାତଦିନ ହେଲା ମୁଁ ଠାକୁରଙ୍କ ପାଖରେ ତୋହ ଲାଗି ଅଧିଆ ପଡ଼ିଥିଲି । ମହନ୍ତ ପୂଜା କରୁଥିଲେ, କାଲି ଅଧରାତିରେ ମହାପ୍ରଭୁଙ୍କ ପାଖରୁ ବର ମିଳିଲା । ମହାପ୍ରଭୁ ମହନ୍ତଙ୍କୁ ସ୍ୱପ୍ନରେ କହିଲେ, 'ତୁ ମଠ ସରଘରିଆ ବିନୋଦକୁ ବରି ହେବୁ ।' ପୃଥିବୀ ଟଳିଯିବ, ଠାକୁରଙ୍କ ହୁକୁମ ଅନ୍ୟଥା ହେବ ନାହିଁ । ତୁ ନିଶ୍ଚିନ୍ତରେ ଥା ।"

"ଆଁ—ଆଁ" କହି ମାଳତୀ ପଦ୍ମୀ ମୁହଁକୁ କଟାଶଠି ପରି ଅନାଇଛି, ତା' ମୁହଁରୁ କଥା ବାହାରୁ ନାହିଁ । ଶେଷରେ ଧୈର୍ଯ୍ୟଧରି କହିଲା, "ମା ଜାଣିଆ—ସେ ବର ଆସିଲେ ମୁଁ ଦଉଡ଼ିଦେବି ।"

"ମା ! ଆଉ ଗୋଟାଏ କଥା, ମୋ' ଆତ୍ମାଟା କମିତକା ଧାଣ୍ଡି ହେଉଛି, ଥରେ ମାଧୀ ଅପାକୁ ଦେଖନ୍ତି !"

ପଦ୍ମୀ—ତୋ' ବାପାକୁ କହ; ସେ ଡ଼ାକି ଆଣନ୍ତୁ ।

ମାଳଣ୍ଣ— ଡ଼ାକ ଅଣିବେ, ହଁ ! ସେ ଓଷା ବରତ କରିବ ବୋଲି ଯୋଡ଼ାଏ ପଇସା ମାଗି ଦେଉଥିଲା, ସେ ମାଗି ଆସିଥିଲା, ଦୂର ଦୂର କରି ବାପା ତାକୁ ତଡ଼ିଦେଲା । ଆଉ ଥରେ ବାପା ବାଧିକ ପଡ଼ିଥିଲା, ଅପା ଦେଖିବାକୁ କହି ପଠାଇଲା । ବାପା କହିଲା, "ମୋର ଜର ଗୁଡ ଯାଉନାହିଁ, ସେ ଦେଖିବ କଣ ? ଆରେ ରେ, ଅସିବ ତ ଆଠ ଦଶ ଦିନଯାଏ ଘରୁ ବାହାରିବ ନାହିଁ ! ବସି ବସି ଭୁଞ୍ଜାଠାରେ ପେଟେ ପେଟେ ଠୁଙ୍କିବ । ମା ! ମୋ ଅପାଟି ବଡ଼ ଦୁଃଖରେ ଅଛି । କୁଟୁମଦାରିଆ ଘର, ଛୁଆପିଲା ପଲେ, ସବୁ ଛୁଆଙ୍କର ଗୁହକନା ମୁତକନା କାଚିବ, ଘରର ସବୁ ଫଳୁଡ଼ି ବାସନ ମାଜିବ । ବାଧିକାରେ ଛ ଦିନ ନ ଦିନ ପଡ଼ିଥିଲେ ବି ତା ମୁହଁରେ ଟୋପାଏ କେହି ପାଣି ଦେବାକୁ ନାହିଁ । ଆହା ! ସେଇଟା କେମିତି ଶୁଖିଲାଟା ହୋଇଗଲାଣି, ଆଉ ବଞ୍ଚିବ ନାହିଁ । ମୁଁ ତାକୁ ଦେଖିପାରିବି ନାହିଁ ।

ମାଳତୀ ଅପାପାଇଁ ଢ଼େର କାନ୍ଦିଲା । ପଦୀ ତାକୁ ଭୁଲା କରାଇ କହିଲା, "ଆଚ୍ଛା ଆଚ୍ଛା, ମାଧୀ ସାଙ୍ଗରେ ତୋର ଭେଟ କରାଇଦେବି ।"

ମହାନ୍ତିଙ୍କ ବାହୁଡ଼ା ବେଳ ହେଲା ଜାଣି ପଦୀ ଚଞ୍ଚଳ ଚାଲିଗଲା ।

ଦିନ ଦୁଇପହରିଆ, ଖିଆପିଆ ବେଳ ଟିକିଏ ଗଡ଼ିଯାଇଛି, ପଦୀ ମହାନ୍ତିଙ୍କ ଦାଣ୍ଡଦୁଆର କବାଟରେ ଧଡ ଧଡ଼ ଚାପୁଡ଼ା ମାରି ଡ଼ାକୁଛି—"ଏ ସାଆନ୍ତେ—ଏ ମହାନ୍ତି ସାଆନ୍ତେ, ଘରେ ଅଛନ୍ତି ? ଏ ମାଧୀ ବାପା ! ଘରେ ଅଛନ୍ତି ? କବାଟ ଫିଟାନ୍ତୁ ।"

ପଦୀ ବେଙ୍କନା ଉପରେ ଓଳି ଆସି କବାଟରେ ଟିକିଏ ଠକ୍ ଠକ୍ ଟିପ ମାରିଦେଲେ ଧୀରେ ଧୀରେ କବାଟ ଉଦୁଆ ହୋଇଯାଏ । ଆଜି ଏତେ ପାଟି କରୁଛି, କବାଟ ଫିଟୁ ନାହିଁ ।

ମାଧ ମହାନ୍ତିଏ ଏଇଲାଗେ ଭାତ ଗୁରେଟା ସାରି ପଲଣରିଆ ଛଣି ତାଗପାଇଁ ବସି ବାଟିଆ କାଟୁଛନ୍ତି । ମହାନ୍ତିଏ ବଡ଼ ବୁଦ୍ଧିମନ୍ତ ଲୋକ— ତାଙ୍କର ମୂଲିଆପାନିଆ ଢ଼େର, ହେଲେ ଆପେ ବାଟିଆ କାଟନ୍ତି । ମୂଲିଆ ହାତକୁ ଦେଲେ କାଳେ ମେଞ୍ଚାଏ ଛଣି ଅଣ୍ଟିରେ ଗୁଞ୍ଜିଦେବ, ସେଥିଲାଗି କାହାରି ହାତକୁ ଦିଅନ୍ତି ନାହିଁ ।

ପଦ୍ମା ମହାନ୍ତଙ୍କ ଗୋଡ଼ ପାଖରେ ଢ଼ପକରି ମୁଣ୍ଡି ଆଣ୍ଠୁଏ ମାରିଦେଇ ବସିପଡ଼ି କହିଲା, "ଏ ସାଆନ୍ତେ ! ଗାଁଯାକ ଚହଳ ପଡ଼ିଛି, ଧାନ ଝିଅ ମାଳତୀର ବାହାଘର—କାହିଁ ମତେ ଖବର ଦେଲ ନାହଁ ? ଘରଲିପା, ଚୁଲିଅଦିଆ, ଖୋଟିଦିଆ ଗାଁଯାକ ସବୁ ମୁଁ କରେଁ । ହେଉ ହେଉ, କାଲି ସକାଳେ ଆସି କରି ଦେଇଯିବି ।"

ମହାନ୍ତଏ ସେହିପରି ବାଟିଆ କାଠୁ କାଠୁ କହିଲେ, ନାହିଁ ନାହିଁ, କଣ କେତେ ବା ଚୁଲିଅଦିଆ, ଝିଅଟା ଆପେ କରି ପକାଇବ ଯେ ! ତୋର ଆସିବା ଲୋଡ଼ା ନାହିଁ ।"

ପଦ୍ମା ସେ କଥା ଶୁଣି ନ ଶୁଣିଲା ପରି କଥା କହିଯାଉଛି—"ଏ ସାଆନ୍ତ ! ଗାଁଯାକ ଲୋକେ କହୁଛନ୍ତି, ଆପଣଙ୍କର ବଡ଼ କପାଳ, ଭଲ ମନମାଫକେ ବନ୍ଧୁଟିଏ ପାଇଗଲେ । ଏଣେ ଜମିଦାରୀ—ଘରେ ଟଙ୍କା ସୁନା ଭରତି, ମରେଇକୁ ମରେଇ ଧାନ ବସିଛି, ଦଶ ବାଟି ଚଷ । ଆପଣ ଓଚ୍ଛୁଣିକା କଣ ପାଇବେ କି ! ଜୁଆଇଁଟି ଯେମିତି ଦେବା ନେବାକୁ ଷଣ୍ଢ । ଆପଣ ଝିଅକୁ ସଙ୍ଗୁଳି ଗଲେ ବାଠ ଖରଚ ବୋଲି କଣ ଦଶ ପାଞ୍ଚଶହ ବାନ୍ଧି ନ ଆଣିବେ ?"

ମହାନ୍ତଏ ବାଟିଅଣ୍ଟା ଥୋଇ ଦେଇ ହସି ହସି ପଚାରିଲେ, "ସତ ନା ଲୋ ପଦ୍ମା, ସତ ନା ?"

ପଦ୍ମା—ସବୁବେଳେ ଗାଁ ଲୋକେ ଦେଖି ଆସି କହୁଛନ୍ତି ପରା ! ବାହାଘର କଥା ସେଠି ଧୂମ୍ ପଡ଼ିଛି, କନ୍ୟାଧୂନା ଟଙ୍କାପଇ ଗଣାଗୋଟି ହୋଇ ଥୁଆଗଲାଣି । ଏତେ ଲୋକ ସାଙ୍ଗରେ ବନ୍ଧୁପଣ—ଆପଣଙ୍କର ନାମ ଚର୍ଚ୍ଚା ନାହିଁ !

ମହାନ୍ତଏ—ଏ ପଦ୍ମ ! କାଲି ରାତିରୁ ତୁ ଲାଗିଯା—କାଲି ସକାଳେ ତୁ ଖାଇ ପିଇ ଆସି ଘର ଲିପା ପୋଛା ଖୋଟିଦିଆ ସବୁ ନବାଡ଼ ଦେ ।

ପଦ୍ମା—ଏ ସାଆନ୍ତେ ! ତୁମ ବନ୍ଧୁ ବାନ୍ଧବ ଘରେ ନିମତା ଦେଇ ଆସିବ ନା ?

ମହାନ୍ତଏ—ନା -- ନା — ନା—ନା, ସେ ପାଙ୍କଙ୍କ ମୁହଁ ପୋଡ଼ଦେ । ଯେ ଆସିବ, ଆଗେ କହି ବସିବ ଖାଇବାକୁ ଦେ, ପିଠା ଖଜା ଦେ । କିଁଆ ରେ ବାବୁ ! ମୁଁ ଝିଅକୁ ଖୁଆଇ ପିଆଇ ବଢ଼ାଇଛି, ଯେ କନ୍ୟାସୁନା ଯୋଡ଼ାଏ ଠଙ୍କା ମିଳିବ, ମୁଁ ନେବି, ତୁମକୁ ଖୁଆଇବି କିଁଆ ?

ପଘା ମହାନ୍ତଙ୍କ ଘରୁ ବାହାରି ଗାଁରେ ଯେତେ ବଳରାମଗୋଷୀ ଘର ଅଛି, ଦୁଆର ଦୁଆର ବୁଲିଲା ।

ଗାଁଟା ଖବ୍ ବଡ଼, ଶକଡ଼ା ଘର, ସେଥିରୁ ଅଧାଅଧି କଳରାମ-ଗୋର୍ଷୀ । ମହାନ୍ତଙ୍କ କହିଥିବା କଥା ପଘା ଜଣ ଜଣ କରି ଭୁନ ଭୁନ ସବୁ କହିଲା । ଅଧିକରି ବି କଛି ଲଗେଇ ଦେଇ କହିଲା—ମହାନ୍ତ କହୁଛି, ଝିଅ ବାହାଘର ଦିନ ଜାତି ଲୋକ ଯେ ତା ଦାଣ୍ଡ ଆଗ ଦେଇ ଚାଲିଯିବ, ସମସ୍ତଙ୍କ ପିଠିରେ ଯୋଡ଼ାଏ ଯୋଡ଼ାଏ ଝାଣ୍ଠୋଇ ବାଡେଇବ । ମୂଳିଆ ଯୋଡ଼ାଏ ପାଣ୍ଠୋଇ ଧରି ବସିଥିବେ ।

ଜାତିଭାଇ ସମସ୍ତେ ଶୁଣି ନିଆଁବାଣ ହୋଇ ଗଲେଣି । କଥାଟା ସତ କି ମିଛ, କେହି ବୁଝିବାକୁ ନାହିଁ । ବଡ଼ଝିଅ ମାଧୀ ବାହାଘର ବେଳେ ମାଧ ମହାନ୍ତ ଜାତିଭାଇଙ୍କୁ ସଙ୍ଗୁଳି ନାହିଁ, ବଡ଼ ବେହଟାଦାର କରିଛି, ସେହି ରାଗଟା ସମସ୍ତଙ୍କ ମନରେ ଥିଲା । ସମସ୍ତେ କଂପୁଛନ୍ତି । ମହାନ୍ତଙ୍କୁ ହାବୁଡ଼ରେ ପାଇଲେ ରସାତଳକୁ ଦେବେ ।

ପଘା ବାହାରିଗଲା ବାଦେ ମାଧ ମହାନ୍ତଏ ଝିଅକୁ କହିଲେ, "ଆଲୋ ମାଳତି ! କାଲି ଭଣ୍ଡାରୁଣୀ ଆସିଲେ ତା ହାତରେ ଘରଦ୍ୱାର ଲିପାପୋଛା କରାଇ ନେବୁ । ଅନା, ଏହି ଯେ କାନ୍ଥ ଝଡ଼ିପଡ଼ୁଛି, ତା ହାତରେ କାଦୁଅ ଛଟାଇ ନେବୁ । ଶୁଣ, ଖବରଦାର ! ସକାଳୁ ତାକୁ ପାଇଟିରେ ଲଗାଇବୁ ନାହିଁ । ଗାଧୁଆବେଳ ହେଲା ତ ଗାଧୋଇ ପଡ଼ି କହିବ, ଦେଲୁ ଭାତ ଖାଇବାକୁ । ଏ ଗାଁ ଲୋକଗୁଡ଼ାକଙ୍କ କଥା ଦେଖିଲେ ବଡ଼ ଚଳି ମାଡ଼େ । ଟିକିଏ କଛି କାମ କରିଦେଲେ ତ, କହି ବସିବେ, ଦେଲୁ ମାଣେ ଧାନ ।"

ଆଜି କାଲି ମହନ୍ତ ବାହାରକୁ ବାହାରନ୍ତି ନାହିଁ । ସାଙ୍ଗ ଲୋକଗୁଡ଼ଙ୍କୁ ଯେନ ସବୁବେଳେ ତୋଟାରେ ବସିଥାନ୍ତି । ଯେଡ଼େ ଲୋକ ହେଉ, ଯେତେ କାମ ଥାଉ ତୋଟା ଭିତରକୁ ଯିବା ବାସନ୍ଦ । ଆଜିକାଲି ରାତିରେ ଆଖଡ଼ା

ବାଧ । କେବଳ ପଦ୍ମା ଭଣ୍ଡାରୁଣୀ ସଞ୍ଜ ସକାଳ ସବୁବେଳେ ତୋଟା ଭିତରକୁ ଯା ଆସ କରେ ।

ମାଧ ମହାନ୍ତଏ ଗେଜନା ପର ସକାଳୁ ଉଠି ପଦାଆଡ଼େ ଯାଇଥିଲେ, ଫେର ଆସି ଦେଖିଲେ, ପଦ୍ମା ପିଣ୍ଡାରେ ବସିଛି । "କି ଲୋ ପଦ୍ମ ! ତୁ ଏଡେ ସକାଳୁ ଆସି ବସିଲୁଣି ଯେ ?"

ପଦ୍ମା—ମଲି ଯା !

"ଯାହାର ବାହା ସେ ଖେଳୁଛି ପଶା
ଧାଇଁ ବୁଲୁଛନ୍ତି ସାଇ ପଡ଼ଶା ।"

ପିଛୁଲା ରାତି ଘଡ଼ିଏ ଥିଲା, ମୁଁ ଉଠି ପଛ ଘରେ ବସି ପାଇଟି ଝାଞ୍ଜଳ ସାର ଦେଇ ଧାଇଁଛି । ଆଜ ଯେ ସାଆନ୍ତ ଅଭିଆଡ଼ୀ ମଙ୍ଗୁଳା, କନ୍ୟା ଦେହରେ ହଳଦୀ ଲଗିବ ।

ମାଧ ମହାନ୍ତ—ନାହିଁ ନାହିଁ ପଦ୍ମା, ଯାହା ଯାହା ହେବାର, ସେଇ ବାହାଘର ଦିନ ସବୁ ହେବ ।

ପଦ୍ମା—ନାହିଁ ସାଆନ୍ତ ! ମୁଲକରେ ଇମିତକା ହୁଏ ନାହିଁ । ଶୁଣିଛି, ବରଘର ବାହାଲଗୁଣ୍ଡ ଆପଣଙ୍କୁ ତିନଶ ଟଙ୍କା ଦେବ, ଆପଣ ଇମିତିକା ଅଶାସ୍ତର କାମ କଲେ ସେ ଲଗୁଣ୍ଡ ଟଙ୍କା ଉଣା କରିଦେବ ।

ମହାନ୍ତ—ଆଚ୍ଛା, ତୁ ମାଣେ ଧାନ ଧରି ଯା, ହଳଦୀ ତେଲ ଶମୁଆ ଦୋକାନରୁ କିଣି ଆଣ । ଧାନ ଦର ଚଢ଼ିଛି, ମାଣେ ଧାନର ଦାମ ଦେଢ଼ ପଇସା । ପଇସାଏ ଦେଲେ ଭଲ ହୁଅନ୍ତା—କଣ କରିବ ଲୋ, ହାତରେ ପଇସା ନାହିଁ ।

ପଦ୍ମା—ଟଙ୍କାଟାଏ ଦେଉନ୍ତୁ, ଭଙ୍ଗାଇ ଆଣେ ।

ମହାନ୍ତ—ନାହିଁ ଲୋ ବାପା ! ଟଙ୍କା ଭଙ୍ଗେଇଲେ ତ, ଉଡ଼ିଲା, ଆଉ ତାକୁ ପାଇବ ନାହିଁ ।

ପଦ୍ମା—ଏ ସାଆନ୍ତ ! ଗାଁରୁ ପାଞ୍ଚଜଣ ଅହିଅ ମାଇକିନିଆ ଆସିବେ; ସେମାନେ ବି ହଳଦୀ ତେଲ ଲଗାଇବେ, ଢେର ହଳଦୀ ଯେ ଲୋଡ଼ା ।

ମହାନ୍ତ—ନାହିଁ ନାହିଁ, ପାଞ୍ଚ ଜଣ ଅନ୍ୱଅ ମାଇକିନିଆ କଣ କରିବେ ? ତୁ ଏକା ଝିଅକୁ ହଳଦୀ ଲଗାଇଦେ । ଆଉ ଜାଣୁ ! ପାଞ୍ଚଟା ମାଇକିନିଆ ଆସିଲେ କହିବେ, ଜଳପାନ ଖାଇବାକୁ ଦେ ।

ପଦ୍ମା ସକାଳୁ ଆଠିକାଏ ବଟା ହଳଦି; ଆଠିକାଏ ତେଲ, ପାଛିଆଏ ଭୁଜା, ପାଛିଆଏ ଉଖୁଡ଼ା ଆଣି ମାଳତୀ ଘରେ ଥୋଇ ଦେଇଥିଲା; ସବୁ ବାହାର କରି ମହାନ୍ତଙ୍କ ଆଗରେ ଥୋଇଦେଲା ।

ମହାନ୍ତ ଏ ସବୁ ପଦାର୍ଥ ଦେଖି କାବା ହୋଇ ଛିଡ଼ା ହୋଇଛନ୍ତି; ପାଟିରୁ କଥା ବାହାରୁ ନାହିଁ । ଦଣ୍ଡକ ବାଦେ କହିଲେ—"ଏଁ—ଏଁ—ପଦ୍ମ—ପଦ୍ମ ! ଏସବୁ କଣ ? ଏ ସବୁ କାହୁଁ ଅଇଲା ?"

ପଦ୍ମା ପଣତ କାନିଟା ମୁହଁରେ ଦେଇ ଟିକିଏ ସକ୍ ସକ୍ କରି କାନ୍ଦିଲା । ମୁହଁ ପୋଛିପାଛି ଦେଇ କହିଲା—"ବୁଝିବା ହେଲେ ସାଆନ୍ତ । ମୋ ହାତରେ କିଛି ବଳ ଅଛି—ମୋର କିଏ ଅଛି, କିଏ ଖାଇବ ? ଆପଣ ସେଦିନ କହିଲେ, ମାଳତୀ ମୋ ଝିଅ । ଏଇ ଝିଅ ବାହାଘରେ ସବୁ ସାରିବ ମନରେ କରିଛି ।"

ମହାନ୍ତ—ହଁ—ହଁ—, ଭଲ କଥା, ଭଲ କଥା ପାଞ୍ଚିଛୁ । ତୋର ମୁଲକଯାକ ଖୁବ୍ ପ୍ରଶଂସା ହେବ, ତୋ'ର ଧର୍ମ ହେବ । ଆଲୋ ମାଳତୀ ! ନେ ନେ, ତୋ ମା ଦେଇଛି, ଏ ସବୁ ପଦାର୍ଥ ଉଠାଇ ନେ, ସାଇତି ରଖ, ବୁଝି ଖବରଦାର ! ଟକୋଡ଼ଳା କରିବୁ ନାହିଁ ।

ପଦ୍ମା—ଝିଅ ଲାଗି ବଡ଼ ପାଞ୍ଚ ଶାଢ଼ୀ ଆଣିଛନ୍ତି ତ ? ଏଇଲାଗେ ସେ କୋଇଲବୁଡ଼ ପାଟ ପିନ୍ଧିବ ।

ମହାନ୍ତଏ କହିଲେ—ହଁ ହଁ ପଦ୍ମା, ସେଇ କଥା କହୁଛି ଟି, ବାହା ଲୁଗାଗୁଡ଼ାକ ଏତେ ଦାମ୍ ! ଖଣ୍ଡେ ନ ହେଉ ବାହା ପାଞ୍ଚ ଶାଢ଼ୀର ଦାମ୍ ଦୋକାନ ଧରିଛି ସାଢ଼େ ଆଠଅଣା । ମୁଁ ପାଞ୍ଚ ଅଣାରୁ ଉଠି ଆଠଅଣାଯାଏ ଗଲିଣି, ତେବେ ହି ନା' ସେଇ ସାଢ଼େ ଆଠଅଣା । ତା ଦୁଣି କାନି ବାନ୍ଧି ରଖିବ ନାହିଁ, ନଗଦ ରୋକ ଟୋକ୍ । ଯାଏ, ଯିମିତି ହେଉ ଆଉ ଅଧଲାଏ ଖଣ୍ଡେ ଦାମ ଚଢ଼େଇ ଆଣିବାକୁ ହେବ, ନ ହେଲେ ତ ନୁହେଁ ।

ପଦ୍ମ—ନା ନା ସାଆନ୍ତ ! ପନ୍ଦର କରିଷର ଝିଅକୁ ନଅହାତ ଶାଢ଼ୀ ଯାଇବ ନାହିଁ । ଆଚ୍ଛା ସାଆନ୍ତ ! ମୁଁ ତ ମୋ ଝିଅକୁ ମଙ୍ଗଳଲତା ପିନ୍ଧାନ୍ତି, ସେହି ଶାଢ଼ୀ ଖଣ୍ଡ ପାଞ୍ଚ ଶାଢ଼ୀ ହେଉ । ମହାନ୍ତଏ ଭାରି ଖୁସିଟାଏ ହୋଇ କହିଲେ,"ହଁ ହଁ ପଦ୍ମ, ଭଲ କହିଲୁ , ଭଲ କହିଲୁ । ଦଶ ଲୋକରେ ତୋ ନା ବ ପଡିବ, ତୋର ଢ଼େର ପୁଣ୍ୟ ହେବ । ଯା ଯା, ଭଲ ଦେଖି ଖଣ୍ଡିଏ ବାରହାତି ଶାଢ଼ୀ କିଣି ଆଣ । ଆଉ ଗୋଟାଏ କଥା ପଦ୍ମ, ବେଦ୍ଧ ଉପରେ କନ୍ୟା ସମର୍ପିବା ବେଳେ ମୋତେ ନୂଆ ଲୁଗା ପିନ୍ଧିବାକୁ ହେବ ପରା ? ତୁ ତ ଯାଉଛୁ, ମୁଁ ଆଉ ଯିବ କଁ୍ୟା ? ମୋ ପାଇଁ ଯୋଡ଼ାଏ ଭଲ ଦେଖି ଲୁଗା କାଳି କରି ନେଇ ଆ । ତୋ ନାମରେ କାଳି ଆଣିବୁ, ବାହାଘର ବାଦେ ମୁଁ ଦାମ୍ ଦେବି ଯେ, କଡ଼ା ଗଣ୍ଡା ଛୁଣ୍ଡାଇ ଦେବି ।”

ପଦ୍ମ ଲୁଗା କିଣିବା ପାଇଁ ବାହାରି ଗଲା, ମହାନ୍ତଏ ଡାକ ଦେଇ କହିଲେ, “ଆଲୋ ମାଳତି ! ଯା ଯା, ଚଞ୍ଚଳ କବାଟ କିଳ ଦେଇ ଆ । ଖବରଦାର ! ସବୁବେଳେ କବାଟଟି କିଳ ଦେଇଥିବୁ । ଆଉ ଶୁଣ, ପଦ୍ମ ଯେ ଚେଲ ଜଳପାନ ଆଣିଛି, ଅଳ୍ପ ବାହାରେ ରଖ, ଆଉ ସବୁ ଆଣ, ମୁଁ କଞ୍ଚ ଘରେ ରଖିଦିଏଁ । ଆଉ ଗୋଟାଏ କଥା ଶୁଣ, ଯେଉଁ ଅହିଆ ମାଇକିନିଆମାନେ କୋଇଲି ବୁଡ଼ାପାର ଦେଖିବାକୁ ଆସିବେ, ସମସ୍ତଙ୍କୁ ଜଳଖିଆ କରିବାକୁ କହିବୁ, ଚଞ୍ଚଳ ଦେବୁ ନାହିଁ । ଘଡିରନ୍ଧା ବେଳ ମଠ ଦେଖିଲେ ସବୁ ପଳାଇଯିବେ । ଖାଲି ପଦ୍ମାକୁ ମୁଠାଏ ଖାଇବାକୁ ଦେବୁ ।”

ମଧୁପୁର ଗାଁ ଗୋଟାକରେ ଚହଳ ପଡ଼ି ଯାଇଛି, ଆଜ ମାଧ ମହାନ୍ତ ଝିଅ ମାଳତୀର ବିଭା । ମାତ୍ର ମହାନ୍ତଙ୍କ ଦୁଆରକୁ ଅନାଅ, ବିଭାଘର ଚିହ୍ନ ବର୍ତ୍ତି ନାହିଁ, ସବୁଦିନ ପରି ଅ.ଜ ବ କବାଟ କିଳା । ପିଲାଠାରୁ ବୁଢ଼ାଯାଏ ମହାନ୍ତଙ୍କ ଦୁଆରକୁ କେଭେ କେହି ଯାଏ ନାହିଁ । ଭୁଲ ଭଟକାରେ କେହି କେବେ ଗଲେ ମହାନ୍ତଏ ତା ପିଛୁ ଧରି ବୁଲିଥିବେ, କାଳେ ଗୋଟାଏ ଦେଲ ପଳାଇବ ପରା ! ଦୁଆର ତ ବନ୍ଦ, ଘଟ ଭିକାରି ବା କିଏ ଯାଉଛି ?

ସଞ୍ଜ ବାଜିଗଲାଣି, ମହାନ୍ତଏ ସକାଳ ସିଆଁ ଟଙ୍କାଥଳିଟି ସଜ କରି ରଖିଦେଲେ, ଚେତେବେଳେ ଚଞ୍ଚଳରେ କାଳେ ହାତରେ ନ ପଡେ । ଝିଅ ମୋଟା ବଳତା କରି ଗୁଡ଼ାଏ ତେଲ ଢ଼ାଳିଦେବ ବୋଲି ଆପେ ଗୋଟାଏ

ସଂରୁ ବଳଚାରେ କେତେ ଟୋପା ତେଲ୍ ପକାଇ ବେଦୀ ଉପରେ ଦୀପଟିଏ ବସାଇଦେଲେ । ମହାନ୍ତଙ୍କ ଘରେ କେବେ ଦୀପ ଜଳେ ନାହିଁ, ଦ୍ୱନ ଥାଉ ଥାଉଁ ଖିଆପିଆ ପାଇଟି ଛୁଡ଼ଥାଏ ।

ପଦ୍ମା ମାଳଡ଼ୀକୁ ଟୋଟିଏ ଘରେ ବସାଇ କନ୍ୟାବେଶ କରାଇ ଦେଉଛୁ, ଦୁଇଜଣ କ'ଣ ଫୁସୁର ଫାସର କଥା ହେଉଛନ୍ତି । ମାଳଡ଼ୀ ବେଳେ ବେଳେ କାନ୍ଦ ପକାଇଲା ପରି ଆକୁଳରେ ପଚ୍ଚରୁଚି, "ମା ! କ'ଣ ହେବ ?" ପଦ୍ମା କହୁଲା, "ଚୁପ୍ ହୋଇ ବସିଥା, ଝିଅ ! ଖବରଦାର ! ମୋ' କଥାରୁ ଟିକଏ ଆଡ଼ ଅନ୍ତର ହୋ ନା, ସବୁ ଭଣ୍ଡୁର ହେବଟି ? ସବୁବେଳେ ଠାକୁରଙ୍କୁ ଡାକୁଥା ।" ମାଳଡ଼ୀ ଠାକୁରଙ୍କ ଆଡକୁ ଅନାଇ ହାତଯୋଡ଼ ଦଣ୍ଡବତ କଲା ।

ରାତି ପହରେ ବ ଗଡ଼ଗଲାଣି, କାହିଁ ବର ? ମହାନ୍ତଏ ଘର ବାହାର ହଉଛନ୍ତ, ବେଳେ ବେଳେ ବାହାରକୁ ବାହାରପଡ଼ ଦାଣ୍ଡକୁ ଅନାଉଛନ୍ତ ।

ମିଚ୍ଛୁପୁର ଗାଁରୁ ଯୋଡ଼ାଏ ମଣିଷ ଧାଇଁ ଧାଇଁ ଅଇଲେ, ମୁଣ୍ଡରେ ଦେହରେ ଗୋଟାଝାଳ, ନଶ୍ୱାସ ବଳ ପଡ଼ୁ ଛୁ । ମହାନ୍ତଙ୍କୁ ଖବର ଦେଲେ— ବାହା ଲଗୁଡ ଡନଶ ଟଙ୍କାରୁ ପଞ୍ଚାଶ ଟଙ୍କା ଊଣା ପଡଯାଇଛୁ । ଆଜ ରାତରେ ଟଙ୍କା ସଜଲ କର ଶେଷ ରାତରେ ଅନୁକୂଳ କର ଦେଲେ ଦ୍ୱନ ହ'ଘଡ଼ ପରକ ବର ଏଠାରେ ପହଞ୍ଚବେ ।

ମହାନ୍ତଏ ପଦ୍ମାକୁ ଡାକ କହୁଲେ, "ଆଲୋ ! ବର କାଲ ସକାଳେ ପହଞ୍ଚବ, ତୁଚ୍ଛାଠାରେ ଗୁହିଁବସିଲେ କ'ଣ ହେବ ? ମୁଁ ଶୋଇବାକୁ ଯାଉଛୁ, ତୁ ଝିଅକୁ ଧର ଶୋ ଯା । ବୁଝି ଖବରଦାର ! ଜାଗ୍ରତ ହୋଇ ଶୋଇବୁ, କୁଳକ୍ଷପଣ ଢ଼େର ବାହାରେ ପଡ଼ଛୁଟି ।"

ବେଦୀ ଉପର ଦୀପଟି ନଭାଇ ଦେଇ ମହାନ୍ତଏ ଶୋଇବାକୁ ଚାଲେ ।

ରାତ ଅଧାଅଧି ହଡଗଲାଣି, ମହନ୍ତେ ଚୋଟା ଭିତରେ ହଜେ ହୋଇଛନ୍ତ, ପାଖଲୋକେ ବେଢ଼ି ବସିଛନ୍ତ । ଆଜ ରାତରେ ଗଞ୍ଜେଇ ମୁଣ୍ଡି ମେଲା, ଚଲମ ଶୀତଳ ହେବାକୁ ନାହିଁ ।

ମହନ୍ତେ ଡାକ କହିଲେ, "ଆରେ ଖ୍ରମ ! ଆରେ ନକୁଳା ! ସବୁ ଠିକ୍‌ଠାକ୍ କରଦେଇ ଅଇଲ ତ ?" ଖ୍ରମା ନକୁଳା ଦୁହେଁଯାକ କହିଲେ— "ଆଜ୍ଞାପ୍ରମାଣେ ସବୁ ଠିକ୍ ।"

"ପଦ୍ମାକୁ ଭଲକର ବୁଝାଇ ଦେଇଛ ?"

"ଆଜ୍ଞା—ପ୍ରଭୂ ! ପଦ ପଦ କର ସବୁ କଥା କହିଛୁ ।"

"ଟୋକୀଟା କ'ଣ କରୁଛି ?"

"ଭାରି ଆକୁଳ ହେଉଛି, ବେଳେ ବେଳେ କାନ୍ଦ କାନ୍ଦ କହୁଛି, ମା ! କ'ଣ ହେବ ? ବାପା କ'ଣ କହିବ ?"

"ପଦ୍ମା ତାକୁ ବୁଝାଉଛି ତ ?"

ଆଜ୍ଞା ! ଆଜ୍ଞା !"

"ଭିତରକୁ କପଟ ଗଲ ଟେ ?"

"ଆଜ୍ଞା, ବାଡ଼ଦୁଆରେ କବାଟରେ ଠୁକ୍ ଠୁକ୍ ମାରିଲୁ, ପଦ୍ମା ଫିଟାଇ ଦେଲା ।"

ତେତିକ ବେଳେ ଶଙ୍କର ପାଇକୋକ ଧାଇଁ ଆସି କହିଲା, "ଆଜ୍ଞା ! ବାଜା ପାଳଙ୍କି ମଶାଲ ବରଯାତ୍ରୀ ଗଛର ବଳରେ ବସିଛନ୍ତି, ଆଜ୍ଞାପ୍ରମାଣେ ହାଜର ହୋଇଥିବେ ।"

"ଆଜ୍ଞା, ଏବେ ଯାଇ ବଟନାଦଆକୁ ବନ୍ଦୋବସ୍ତ କରାଇ ପକାଅ, ବାହା ଖଦ ଲୁଗା ପିନ୍ଧାଇ ଦିଅ ।"

ରାତି ପାହା ପାହା, ଟିକିଏ ଝିଲଝିଲିଆ ଅନ୍ଧାର ଅଛି, ମାଧବ ମହାନ୍ତିଙ୍କ ଦ୍ୱାରେ କୋଡ଼ିଏ ତିରଶିଟା ଢୋଲ, ତାସା ନାଗରା ବାଜା ଏକା-ବେଳକେ ଉଛୁଳି ପଡ଼ିଲା, ପାଳଙ୍କି ଟିଏ ଦୁଆର ଆଗରେ ଥୁଆ, ବର ଖଣ୍ଡିଏ ଖରଡ଼ରେ ପିଣ୍ଡାରେ ଭୁନ ହୋଇ ବସିଛି । ଚଟ୍ କରି ମହାନ୍ତିଙ୍କ ନିଦ ଭାଙ୍ଗିଗଲା, ଟଙ୍କା ଥଳିଟି କାଖରେ ଯାକି ଭାରି ମନଫୁଲଣାରେ ଧାଇଁଲେ । ଆଗେ ଟଙ୍କା ଗଣି ନେଲେ, ପଛେ ବାଟବରଣ ହେବ । ଚଞ୍ଚଳ ଧାଇଁଚନ୍ତି, ଦୁଆର ବନ୍ଧଟା ଧଡ଼୍ କରି ମୁଣ୍ଡରେ ବାଜିଲା, ଏକାବେଳକେ

ଓଲଟି ଶତ୍ରୁପଟାଙ୍ଗ୍, ତଳେ ପଡ଼ିଗଲେ । ହାତ ଦେଇ ଦେଖିଲେ ରକ୍ତଧାର ଗୋଡ଼ଯାଏ ବହି ପଡ଼ୁଛି । ଏତେବେଳେ ଆଉ ତାକୁ ଅନାଇଲେ ହେବ ? ଆଗେ ଟଙ୍କା ଗଣିନେଇ ଯାଉ ରକ୍ତ ପୋଛା ପୋଛି କରିବେ । ଚୋଗାଖଣ୍ଡ ଭଲକରି ମୁଣ୍ଡରେ ଗୁଡ଼ାଇ ଦେଲେ, ବାହାରକୁ ବାହାରି ପଡ଼ି—"ଆସିବା ହେଉ, ଆସିବା ହେଉ," ବରଯାତ୍ରୀଙ୍କୁ ଡାକୁଛନ୍ତି । ବର- ମାମୁଁ ଆଗେଇ ଆସି କହିଲେ, "ଏ ସମୁଧିଏ ! ଆଉ ବସିଲେ କଣ ହେବ, ଚଞ୍ଚଳ ବର କନ୍ୟା ବିଦା କରନ୍ତୁ, ଖରା ଉଠିଯିବ । ମାଧ ମହାନ୍ତିଏ କହିଲେ, "ଏଁ—ଏଁ—-ବର ଏଇଲ୍‌ଟେ ପହଞ୍ଚିଲ୍, ବିଭା ହୋଇ ନାହିଁ, ବିଦା କଣ ହେବ ?"

ବର ମାମୁ—ହାତଗଣ୍ଠି ପଡ଼ିଗଲ୍, ବିଭା ହୋଇଗଲ୍, ଆଉ ବା କଣ ?

ମହାନ୍ତ—କନ୍ୟାସୁନା ଟଙ୍କା ?

ବର ମାମୁ—ଟଙ୍କା ଗଣି ନେଲେ ପରା ?

ମହାନ୍ତଙ୍କ ଫଟା ମୁଣ୍ଡ ପୋଡ଼ୁଥିଲ୍, ତା ଉପରେ ଜଳନ୍ତା ଅଙ୍ଗାର ପାଛିଆଏ କିଏ ଅଜାଡ଼ିଦେଲା । "ଏଁ—ଏଁ—ଏ କଣ ଉକାଉଛି ! ବଦମାସ ଗୁଡ଼ାକ କେଉଁଠିକାର ।" ଲଗିଗଲା ତୋଖଡ଼ ମୋଖଡ଼ । ଏଣେ ମହାନ୍ତିଏ ଏକା—ତେଣେ ଘୁଳଣ ଅଗ୍ରଣ ଲୋକ । ମହାନ୍ତିଏ କ୍ରୋଧରେ ଅଜ୍ଞାନ, ମୁହଁ ଚଳୁ ଚକ୍ଷୁ ହାନ୍ତ ଚଳିବା ଭଳି ହେଲାଣି । ହେଲେ, ବର ପକ୍ଷରେ କ୍ରୋଧ ନାହିଁ, ଭଲକରି ଅନାଅ, ସମସ୍ତଙ୍କ ମୁହଁରେ ମୁରୁକି ହସ, ସମସ୍ତେ ଦେହ ଟିପାଟିପି ହେଉଛନ୍ତି । ଏତିକିବେଳେ ଆଠଦଶଟାଢ଼ୋଲିଆ ମହାନ୍ତଙ୍କୁ ବେଢ଼ି ଯାଇ ଅର୍ଦ୍ଧାଳିଆ ଢୋଲ ପିଟୁଛନ୍ତି, ମହାନ୍ତଙ୍କ ସାଆନ୍ତ ବଲବଲ ହେ—ଜଳ ଜେଲ୍‌ହେ—ଆପଣଙ୍କ ଝିଅ ବାହାଘର ହୋଇଗଲା, ଆମକୁ ଦାରୁପିଆ ପଇସା ମିଳିଯାଉ । ମହୁରିଆଟା ବେଳେ ବେଳେ ମହାନ୍ତଙ୍କ କଛା ପାଖରେ ପେଁ ପେଁ କରି ମହୁରିଟା ବଜାଇ ଦେଉଛି । ଗାଁ ମଙ୍ଗଳା ପୂଜା ବେଳେ ବାଜା ମଝିରେ କାଳସି ଯିମିତି ନାଚେ, ମହାନ୍ତିଏ ସେହିପରି ନାଚ ନାଚ ଅଥୟ ହେଲେଣି । ମହାନ୍ତିଏ ରଡ଼ି ଗୁଡ଼ି କଣ କହୁଛନ୍ତି, ବାଜାରେ କଣ ଲୋକଙ୍କୁ ସେ କଥା ଶୁଭୁଛି ? ମହାନ୍ତଙ୍କୁ ହାଲିଆ କରି ପକାଇବାର ଏ ଗୋଟାଏ ଫିକର । ଏତିକିବେଳେ କିଏ ଗୋଟାଏ ଦୁଷ୍ଟଲୋକ ମହାନ୍ତଙ୍କ ପଛଆଡ଼େ ଗୋଟାଏ ଜଳନ୍ତାଭୁଇଁଚମ୍ପା ବସାଇଦେଲା, ତାଙ୍କ ପିଠିରେ ନିଆଁ ପଡ଼ି ସ୍ଥାନ ବଡ଼ ଚଡ଼ର ଗୁଡ଼ାଏ ଫୁଟୁକା ହୋଇ ଜଳୁଛି ।

ଗାଁ ଗୋଟାକର ପିଲାଠାରୁ ବୁଢ଼ାଯାଏ ବିଲକୁଲ ଲୋକ ଜମା ହୋଇଗଲେଣି । ମହାନ୍ତ ଦୁଆରେ ବଳ ମୁଠାଏ କେହି ବୁଣିଦେଲେ ମଣିଷ ମୁଣ୍ଡରେ ଅଟକିଯିବ, ତଳେ ପଡ଼ିବ ନାହିଁ ।

ମହାନ୍ତ ଦେଖିଲେ, ତାଙ୍କ ମୁଖାକାପ ଲୋକେ ବେଢ଼ିଯାଇ ଠୋ ଠୋ ହସୁଛନ୍ତି । ଏତିକିବେଳେ ଗୁଡ଼ାଏ ନହାତି ଦୁଷ୍ଟ ପିଲା—

"କନ୍ୟା ସୁନାର ବଡ଼ ମିଜା,
ମହାନ୍ତ ଖାଇବେ ନବାତ ଖଜା ।"

ଗୀତ ଗାଇ ତାଳିମାରି ନାଚୁଛନ୍ତି ।

ମହାନ୍ତ ଦେଖିଲେ, ଆଉ ସମ୍ଭାଳ ହେବନାହିଁ । ସମସ୍ତେ ଗୋଟାଏ ବାଟେ, କାହାକୁ କଣ କହିବେ; କହିଲେ ବା ଶୁଣୁଛି କିଏ ? କୌଣସି ରୂପେ ଗୋଳମାଳ ଠେଲି ମଠ ଭିତରକୁ ପଳାଇଲେ । ମହନ୍ତେ ଏଇଲାଗେ ଖଟିଆରୁ ଉଠି ଖଡ଼ା ହୋଇଛନ୍ତି । ମହାନ୍ତଙ୍କୁ ଆସିବାର ଦେଖି ମହନ୍ତ ଗୋଟାଏ ପାଟି କରି କହିଲେ, "ଏତିକାଳଠାରେ ଦାଣ୍ଡରେ କିଏ ପାଟି କରୁଛି ବୁଝି ଆସ ତ ?" ମହାନ୍ତ ଯାଇ ମହନ୍ତଙ୍କ ଗୋଡ଼ତଳେ ଧଡ଼ାସ କରି ପଡ଼ି ରଡ଼ି ଛାଡ଼ୁଛନ୍ତି । "ଉଠ ଉଠ ମହାନ୍ତଏ, କଣ, କଥା କଣ ବୋଲ ।" ମହାନ୍ତଙ୍କ ମୁହଁରୁ ତାଡ଼ଠେଙ୍କ ମୁହଁ ପରି ଫେଣ ଗାଜୁଛି । ଆଉ କଥା କହି ପାରୁ ନାହାନ୍ତି, କାନ୍ଦି ପାରୁ ନାହାନ୍ତି । ହାତରେ ଠାରିଦେଲେ—ପାଣି । ମୁହଁ ଅଧୁଆ, ଦାନ୍ତ ଅଘଷା, ଢକଢକ କରି ଢ଼ାଳେ ପାଣି ପିଇ ଦେଇ ଟିକିଏ ସାଷ୍ଟମ ହୋଇ ବସିଲେ । ମହନ୍ତ ବଡ ଦୟାବନ୍ତ, ବହୁତ ଆଶ୍ୱାସନା କରି ମହାନ୍ତଙ୍କ ପିଠିରେ ହାତ ବୁଲାଇଲେ । ଏତିକିବେଳେ ବରମାମୁ ପରି ପରିଡ଼ା ଆଉ ଗୁରି ଜଣଙ୍କୁ ସାଙ୍ଗରେ ଧରି ମହନ୍ତଙ୍କ ଗୋଡ଼ତଳେ ଲମ୍ବ ହୋଇ ପଡ଼ିଗଲା ।

ମହନ୍ତ ଆଜ୍ଞା କଲେ— ଆରେ କଣ ତୁମ କଥା କହ, ଉଠ ଉଠ— ବୋଲ ବୋଲ କଥା କଣ ?

ପରି ପରିଡା ହାତଯୋଡ଼ି କହିଲା—ଆଜ୍ଞା ଆମେମାନେ ବିଦେଶୀ ଲୋକ, ଆମ ଉପରେ ଅନ୍ୟାୟ ହୋଇଛି । ଶ୍ରୀମହାପ୍ରଭୁ ଏ ଗାଁ ହାକମ, ଆମ ମାମଲା ନ୍ୟାୟ ବିଚାର ହେଉ । ଏଇ ଯେ ବସିଛନ୍ତି ମାଧ ମହାନ୍ତଏ, ଏ ଆମ ସମୁଧି । ମାଧ ମହାନ୍ତ କ୍ରୋଧରେ କହିଲେ, "ଚୋର କି ସମୁଧି ବେ— ଉକାଇତ ଜୁଆଚୋର !" ମହନ୍ତ କହିଲେ, "ରୁହ ରୁହ ମହାନ୍ତଏ । ସେ କଣ କହୁଛି କହିଯାଉ, ତା ବାଦେ ତୁମ କଥା ଶୁଣିବୁଁ ।"

ପରି ପରିଡ଼ା—ଆଜ୍ଞା, ଏହି ମହାନ୍ତଏ ମୋ ପାଖରୁ କନ୍ୟା-ସୁନା ସାତ ଶହ ଟଙ୍କା ନେଇ ତାଙ୍କ ଝିଅ ମାଳଣ୍ଡୀକୁ ମୋ ଭଣଜାକୁ ବାହା ଦେଲେ, ହାତଗଣ୍ଠି ବି ପଡ଼ିଗଲା, ବାହା ବାଦେ କହିଲେ, ଆଉ ତିନିଶ ଟଙ୍କା ଲଗୁଛି ଦେ । ମୁଁ ଆଉ କାଁହା ଦେବି କି ? ଏବେ ନୂଆ ଶ୍ଲେଷ କରି କନ୍ୟାକୁ ଛାଡ଼ୁ ନାହାନ୍ତି ।

ମହନ୍ତ—ଆଚ୍ଛା, ଠାକୁର ମନ୍ଦିରରେ ସତ ବୋଲ, ଏକ ଦୁଇ କରି ଟଙ୍କା ଗଣି ଦେଇଛ ତ ?

ପରି ପରିଡ଼ା—ଆଜ୍ଞା ସତ କହିବି, କୋଡ଼ି କୋଡ଼ି ଟଙ୍କା ଗଣି ଦେଇଛି ।

ମହନ୍ତ—ଏ କଥା ବିଶ୍ୱାସ ହେଉନାହିଁ । ମହାନ୍ତ କହୁଛି ପିଲାପିଚିକା ନୁହନ୍ତି, ବୁଢ଼ା ପୁରୁଖା, ଟଙ୍କା ନେଇ ମାନିବେ ନାହିଁ, ଏ କି କଥା ?

ମାଧ ମହାନ୍ତ ମହନ୍ତଙ୍କ ଗୋଡ଼ତଳେ ପଡ଼ି କହିଲେ, "ଆଜ୍ଞା, ଧର୍ମ ଅବତାର ! ନ୍ୟାୟବିଚାର, ନ୍ୟାୟବିଚାର । ଏ ଡ଼କାଏତମାନଙ୍କୁ ଜେଲ ଲଗାଇ ଚଡ଼ିଦିଅନ୍ତୁ ।"

ମହନ୍ତ—ଦେଖ, ଏମାନେ ସ୍ୱଦେଶୀ ମଣିଷ, ଦେଶରେ ଯାଇ ପାଟି କରିବେ, ଏ ଗାଁରେ ନ୍ୟାୟ ବିଚାର ନାହିଁ । ଦୁଇ ପକ୍ଷରୁ ପ୍ରମାଣ ନେଇ କଥାଟା ବିଚାର କରିବାକୁ ହେବ । ହୋଇ ହେ ପରିଡ଼ା ! ତୁମେ ଯେ ମାଧ ମହାନ୍ତଙ୍କୁ ସାତ ଶହ ଟଙ୍କା ଗଣିଦେଲ, କେହି ଗୁହା ଅଛି ?

ପରି ପରିଡ଼ା ହାତଯୋଡ଼ି ଛିଡ଼ା ହୋଇ କହିଲା, "ଆଜ୍ଞା ମହାପ୍ରଭୁ, ଶହେ ଜଣ ଗୁହା । ଆସ ତ ଶ୍ୟାମା, ନକୁଳା, ମଙ୍ଗା, ଶଙ୍କରା, ଚନ୍ଦା, ମଧୁ ମହାନ୍ତି, ସାଧୁ ଧଳ, ଧର୍ମୁ ପାଢ଼ ।" ମହନ୍ତେ ଜଣ ଜଣକରି ସବୁ ଗୁହାଙ୍କର ଜବାନବନ୍ଦି ଶୁଣିଲେ, ଢେର ଜେରା କଲେ, ସାଫ ସାବୁତ ସାତ ଶହ ଟଙ୍କା ଗଣିଦେବା, ମହାନ୍ତଙ୍କ କାଖରେ ଥିବା ଏହି ଥଳିରେ ଟଙ୍କା ପୂରାଇ ନେଇ ଘରେ ଥୋଇ ଆସିବା, ସବୁ ଠିକ୍ । ସତକୁ ସତ, ମାଧ ମହାନ୍ତଙ୍କ କାଖରେ ଟଙ୍କା ଥଳିଟି ଥିବାର ଦେଖାଗଲା । ମାଧ ମହାନ୍ତଏ ଗୋଟାଏ କଥାରେ କାଟି ଦେଲେ—ଏ ଗୁଡ଼ାକ ଡକାଇତ ।

ମହନ୍ତେ— ଆଚ୍ଛା, ଏ ଗାଁର କେହି ଗୁହା ଅଛି ?

କେହି ନ ହ୍ରାକୁଣୁ ମହାନ୍ତି ଜାତିଭାଇ ଗାଁର ଦଶ ଜଣ ସାକ୍ଷ ଦେବା ଲାଗି ଛୁଡ଼ା ହଦାଇଗଲେ । ମହାନ୍ତିଏ ସେମାନଙ୍କ ମୁହଁକୁ ଅନାଇ ଦେଇ କହିଲେ, "ଆଜ୍ଞା, ଏଗୁଡ଼ାକ ମୋ ମୁଖାଳାଣ ଲୋକ, ଏମାନଙ୍କ କଥା ନାମଞ୍ଜୁର ।" ମହନ୍ତେ କହିଲେ, "ଗୁହା କଥା ଗୁଡ଼ିଦିଅ, ଆମେ ନିଜେ ଯାଇ ମହାନ୍ତିଙ୍କ ଘର ଭିତର ଦେଖିବୁଁ । ଗଲା ରାତିରେ ବିଭା ହୋଇ ଯାଇଥିଲେ ସେଥିରେ କିଛି ଚିହ୍ନ ତ ଥିବ ।" ବରପକ୍ଷ ମହନ୍ତଙ୍କ କଥାରେ ନିତାନ୍ତ ନାରାଜ । "ଆଜ୍ଞା ! ଅଧ ରାତିରୁ ବିଭା ଛୁଡ଼ିଲାଣି, ଆଉ ଚିହ୍ନ କଣ ଥିବ ? ଆପଣ ସରଜମିନକୁ ଯିବେ ନାହିଁ ।"

ମାଧବ ମହାନ୍ତି ଖୁସି ଆନନ୍ଦରେ ଖୁସି ଉତ୍ସାହରେ ମହନ୍ତଙ୍କ ଗୋଡ଼ ଧରି ଟାଣୁଛନ୍ତି । "ଆସି ଆଜ୍ଞା ହେଉ, ମୋ ଘର ଦେଖି ଆଜ୍ଞା ହେଉ ।"

ବରପକ୍ଷ ମୁହଁ ଶୁଖାଇ କହିଲେ, "ଆଜ୍ଞା ନା, ଆପଣ ସେ ଜାଗାକୁ ବିଜେ ହେବେ ନାହିଁ ।"

ମହନ୍ତ କହିଲେ, "ନାହିଁ ନାହିଁ, ସେ କଥା ହେବ ନାହିଁ, ମହାନ୍ତିଙ୍କ କଥା ଶୁଣିବାକୁ ହେବ ।"

ମହନ୍ତ ଦୁଇପକ୍ଷ ଧରି ସରଜମିନ ତଦାରଖ କରିବାକୁ ବାହାରିଲେ ।

ପ୍ରଥମ ପିଣ୍ଡା ଉପରେ ବରକୁ ଦେଖାଗଲା--ହାତରେ କଉତୁକସୂତ୍ର, ଦୁବ ବରକୋଳି ପତ୍ର ବନ୍ଧା, ମୁଣ୍ଡରେ ମୁକୁଟ, ହାତରେ ଗୁଆକାତି, ଆଉ ବେଦି ଉପରେ ନଡ଼ିଆ ଗୋଟିଏ ।

ପରି ପରିଡ଼ା ହାତଯୋଡ଼ି ମହନ୍ତଙ୍କୁ କହିଲେ, "ଆଜ୍ଞା, ଦେଖି ଆଜ୍ଞା ହେଉ, ବାହା ହେଲା ବର କି ନାହିଁ ?"

ମହନ୍ତ—ଆଚ୍ଛା ଆଚ୍ଛା, ଭିତରକୁ ଚାଲ, ଆଉ କିଛି ଚିହ୍ନ ବର୍ଣ୍ଣ ଅଛି କି ନାହିଁ, ଦେଖାଯାଉ ।

ପରି ପରିଡ଼ା ହାତଯୋଡ଼ି ମହନ୍ତଙ୍କୁ କହିଲେ, "ଏଇ ଦେଖି ଆଜ୍ଞା ହେଉ ବେଦି ଉପର କଥା, ଏହି ଦେଖିବା ହେଉ, କନ୍ୟା ଆଠ କଳସ ମାଡ଼ିଛି, ଏହି ଦେଖନ୍ତୁ, ଲାଜାଞ୍ଜଳି ଖଇ ପଡ଼ିଛି, କଳସ ଉପରେ ପୁଷ୍ପାଞ୍ଜଳି ପଡ଼ିଛି । ଏଣେ ଦେଖି ଆଜ୍ଞା ହେଉ, ଏହିଠାରେ ବ୍ରାହ୍ମଣ ଭୋଜନ ହୋଇଥିଲା,

ଦହିଗୁଡ଼ ଉଚ୍ଛିଷ୍ଟ ଭୂଜା ପଡ଼ିଛି । ଏହିଦେଖି ଆଜ୍ଞା ହେଉ, ଏହିଠାରେ ଆମେ ଜାତିଭାଇମାନେ ଭୋଜନ କରିଥିଲୁଁ । ସଙ୍କୁଡ଼ି ଉଠିନାହିଁ, ସବୁଆଡ଼େ ଅଇଁଠା ପଶ ପଡ଼ିଛି ।"

ମାଧ ମହାନ୍ତି କୁନ୍ଥେଇ କୁନ୍ଥେଇ କହିଲେ, "ନାହିଁ, ନାହିଁ, ମୋ ଘରେ କାଲି ଚୁଲି ଲଗିନାହିଁ ।"

ମହନ୍ତେ ଶେଷରେ ଭୋଜିଶାଳ ପାଖକୁ ଚାଲିଯାଇ ହାତବାଡ଼ିରେ କବାଟଠା ଉଦୁଆଁ କରି ଦେଲେ, ଚୂଲିରେ ରଡ଼ ନିଆଁ ଗରଗର ହେଉଛି, ଘୁଞ୍ଚାଏ ବଡ ବଡ଼ ଭାତ ହାଣ୍ଡି, ଡ଼ାଲି ହାଣ୍ଡି, ତିଅଣ ହାଣ୍ଡି ଗଡ଼ୁଛି, ମାଧ ମହାନ୍ତିଙ୍କ ଜ୍ଞାନ ହଜିଗଲାଣି, ପିଠି ପୋଡ଼ୁଛି, ମୁଣ୍ଡ ପୋଡ଼ୁଛି, ମନ ପୋଡ଼ୁଛି । ମନରେ କହିଲେ, ଏ କଣ ଏ ! କଣ ଗଡ଼ିରେ ଭୂତଆସି ସବୁ କରିଗଲା ? ବସିବା ଜାଗାରେ ଠାଁ ଉଛୁଳପଡ଼ିଲା । କିଛି କଥା ଶୁଭୁ ନାହିଁ, କିଛି ଦିଶୁ ନାହିଁ, ଗଲୁକରି ମାଡ଼ି ବସିଲାଣି, କୁନ୍ଥୋଉଛନ୍ତି, କମ୍ପୁଛନ୍ତି ।

ମହନ୍ତ ପଚାରିଲେ, "ମହାନ୍ତିଏ ! ଏବେ ତୁମର ଜବାବ କଣ ?"

ମାଧ ମହାନ୍ତି କହିଲେ, "ଆଜ୍ଞା, ମୋ ଝିଅ ବାହା ହୋଇନାହିଁ ।"

ଜାତିର ମୁଖ୍ୟା ବଳରାମ ନାୟକେ ହାତଯୋଡ଼ି କହିଲେ, "ଆଜ୍ଞା ! ଆପଣ ଆମ ରଜା, ସହଜରେ ହାକମ, ଆମମାନଙ୍କ ଦୁଃଖ ହାଲ ସବୁ ବୁଝିବେ, ହେଲେ ଜାତିଆଣ କାମନା ଜାତି ବୁଝିବେ, ହାକମଙ୍କର କିଛି ଅକ୍ତିଆର ନାହିଁ । ବୁଝି ଆଜ୍ଞା ହେଉନ୍ତୁ, ମାଧ ମହାନ୍ତି ମଙ୍ଗୁଳା ଝିଅଟାକୁ ବାହା ନ ଦେଇ ଘରେ ରଖିଛି, ଆଜ ସୂର୍ଯ୍ୟ ବୁଡ଼ିବାଯାଏ ସେ ଯଦି ଝିଅକୁ ବାହା ନ ଦିଏ; ସେ ଏକଘରିଆ ହେବ, ତାକୁ ନିଆଁପାଣି ଧୋବା ଭଣ୍ଡାରୀ ସବୁ ବାସନ୍ଦ, ସେ ଝିଅଟାକୁ ଆଉ କେହି ବାହା ହେବେ ନାହିଁ ।"

ମହନ୍ତେ କହିଲେ, "ମହାନ୍ତିଏ ହେଲେ ବା ଏକଘରିଆ, ନିଆଁ ବଡ଼ଆଡିରେ ଘରେ ନିଆଁ ରଖିଦେବେ, ଗାଁର ମାଠିଆ ପାଣି ଘରେ ଥୋଇ ଦେଇଥିବେ, କିଁ୍ୟା କାହାକୁ ମାଗିପିବେ ?"

ବଳରାମ ନାୟକେ କହିଲେ, "ଆଜ୍ଞା ସେପରି କଣ ? ମହାନ୍ତି ଘର ମାଠିଆ ଯେଉଁ ପୋଖରୀରେ ବୁଡ଼ିବ, ସେ ପୋଖରୀ ଅପ୍ରତିଷ୍ଠା ହେବ, ଦଶ ଟଙ୍କା ଖରଚ କରି ପ୍ରତିଷ୍ଠାକରି ଦେବାକୁ ହେବ । ଏହିପରି ଯେତେ ମାଠିଆ

ପାଣି ଆଣିବେ, ତେତେ ଦଶଟଙ୍କା ଖରଚ ଲାଗିବ । ଆଉ ଗୋଟାଏ କଥା, ଗୋହିରୀରେ ଚାଲିଗଲେ ଦାଣ୍ଡ ଅପ୍ରତିଷ୍ଠା ହେବ, ଜଣେ ପାଣି ହାଣ୍ଡିଏ ଗୋବରପାଣି ଧରି ପଛେ ପଛେ ଛିଞ୍ଚି ଛିଞ୍ଚି ଚାଲୁଥିବ ।”

ମହାନ୍ତେ କହିଲେ, “ନାହିଁ ନାହିଁ, ସେ ବୁଢ଼ା ହୋଇଗଲେଣି, ଭଲ ମନ୍ଦବେଳକୁ ତମେମାନେ ସାହା ହେବ, ଏକା ।”

ମଦନ ନାୟକେ—ଆଜ୍ଞା, ଗୋଳମାଳିଆ କଥା କ୍ୟାଁ—ସଫା କଥା, ସେ ମରିଗଲେ ଆମ୍ଭେମାନେ କଣ ଛୁଇଁବୁଁ ? ହାଡ଼ ଘୋଷାରି ନେବେ । ଏଇ ମଠରେଇମାନଙ୍କରେ ଯେତେ ଧାନ ଅଛି, ଯେତେ ଦ୍ରବ୍ୟ ଅଛି, ହାତଏ ନେବେ, ସେ ମାରୁ ଜନଷ କଣ କେହି ଛୁଇଁବ ?

ମାଧ ମହାନ୍ତ ପଡ଼ି ପଡ଼ି ସବୁ ଶୁଣିଲେ । ବିଚାର କଲେ, ଦେଶ ମେଳ ହେଲାଣି, ମହନ୍ତ ବି ସେମାନଙ୍କ ପଟରେ, ମୋର ତ ଏହି ହାଲ, ଉଚ୍ଛୁଣିକା ଯେବେ ସବୁ ବାକ୍ସ ଖୋଳାଖୋଳି କରି ନେଇଯିବେ, କଅଣ କରିବ ? କାହିଁ ମାମଲା କରିବ—ଗୁହାରି କିଏ ହେବ ? ବଳରାମ ନାୟକଙ୍କୁ ପାଖକୁ ଡାକି ତାଙ୍କ ହାତଯୋଡ଼ି ଧଇଲେ । କହିଲେ, “ତୁମେ ଆମ ଜାତିର ମଉଡ଼ମଣି, ମୁଁ ତୁମ ହାତ ଧରୁଛି, ସମସ୍ତଙ୍କ ଗୋଡ଼ତଳେ ପଡ଼ୁଛି, ମୋର ସବୁ ଦୋଷ କ୍ଷମା କର, ମୋ ଝିଅଟିକୁ ବିଭା କରେଇ ଦିଅ । ମୋ ହାଲ ତ ଦେଖୁଛ, ତା ମାମୁଁ କନ୍ୟା ସମର୍ପି ଦେବ ।”

ମହାନ୍ତ ମୁହଁରୁ ଯିମିତି ଏହି ପଦକ ବାହାରିଛି, ମହନ୍ତ ଆଖି ଟିପି ଦେଲେ, ପଦ୍ମା କନ୍ୟାକୁ ନେଇ ବର ପାଖରେ ଉପସ୍ଥିତ । ବ୍ରାହ୍ମଣ, ଭଣ୍ଡାରି ହାଜର ଥିଲେ, ସାଙ୍ଗେ ସାଙ୍ଗେ ମନ୍ତ୍ରପାଠ, ବିଭା ଆରମ୍ଭ, ମାମୁଁ ସପନ୍ନ ପାନେ କନ୍ୟା ସମର୍ପି ଦେଲେ, ଘଣ୍ଟାକ ମଧ୍ୟରେ ବିଭା ସମାପ୍ତ ।

ବରକନ୍ୟା ମେଳାଣି ହେବେ—ମାଳଶ୍ରୀ ବାପା ଗୋଡ଼ ଧରି ବାହୁନି ବସିଲା । ମହାନ୍ତଏ ରାଗରେ ଗୋଡ଼ ଗୁଟି ଦେଲେ ଯେ, କନ୍ୟା ଭୂଲୁ କରି ପଡ଼ିଗଲା । ମାଳଶ୍ରୀର ସେଥିକି ଚିନ୍ତା ନାହିଁ, ପୁଣି ବାପା ଗୋଡ଼ ଧରି କହିଲା—“ବାପା, ତୁ ଉଚ୍ଛୁଣିକା ବାଧିକା ପଡ଼ିଛୁ, ମୁଁ ତୋ ପାଖରେ ରହି ସେବା କରିବ, ତୁ ଭଲ ହେଲେ ଯିବ ।” ମାଧ ମହାନ୍ତ—“ଦୂର ! ଦୂର ! ପନ୍ଦର ବରଷକାଳ ବସି ଖୁଆଇଲି, ଏବେ ଜଣକୁ ଦି’ଜଣ ବସି ଖାଇବ ପରା ?”

ପଧା ପାଖରେ ଛୁଡ଼ା ହୋଇ ସବୁ ଶୁଣୁଥିଲା, ମାଳଣୀକୁ କୁଣ୍ଡେଇ ଉଠାଇ ନେଇ ପାଲଙ୍କିରେ ବସାଇଦେଲା । ବର ତ ଆଗରୁ ଯାଇ ବସିଥିଲା, ଉଠାଅ ପାଲଙ୍କି । ବାଜାବାଲା ଆଉ ବର ଯାତ୍ରୀଏ ଧଜବାଜ ହେଉଁ ହେଉଁ 'ହୁଁ ମେଶ ଘଇରେ' ଡାକ ଗୁଡ଼ ପାଲଙ୍କି ଗାଁ ବାହାର ଗହୀର ବାଲରେ ଦାଖଲ ।

ପାଞ୍ଚ ଛ ଦିନ ଉତ୍ତାରେ ମହନ୍ତ ଦିନେ ପାଖଲୋକଙ୍କୁ ଡାକ କହିଲେ, "ହୋଇ ରେ ! ବଣ୍ଡାଘର ଗଲାଠାରୁ ମାଧ ମହାନ୍ତ ତ ଦାଣ୍ଡରେ ଦିଶୁନାହିଁ ! ତାର ଜର ହୋଇଥିଲା, ବୁଝ ତ କଣ ହେଲା ?" ଯୋଡ଼ାଏ ପାଖ ଲୋକ ଧାଇଁଲେ, ଦାଣ୍ଡ ଦୁଆରେ, ବାଡ଼ ଦୁଆରେ ଢ଼େର ଡାକଲେ, କବାଟରେ ଧଡ଼ ଧଡ଼ କର ମାରଲେ, କେହି ଶୁଣିବାକୁ ନାହିଁ । ସେମାନେ କଣ କଲେ କ, ଗୋଟାଏ ନଶୁଣି ପାଚେରିରେ ଲଗାଇଦେଇ ଭିତରକୁ ଡେଇଁ ପଡ଼ିଲେ, ସଦର କବାଟ ଫଟାଇଦେଲେ । ଭିତର କାଣ୍ଡ ଦେଖି କାବା ହୋଇ ଗଲେଣି । ମହାନ୍ତଘର ଭିତରଆଡକୁ ମୁଣ୍ଡ ଦେଇ ବାହାରକୁ ଗୋଡ଼ାଏ କ, ଗୋଟାଏ ବଡ ମୋଟା ଡ଼ୋଲ ପରି ଦୁଆରବନ୍ଧ ପାଖରେ ପଡ଼ିଛି । ଅଧା ଲଙ୍ଗଳା—ମୁଣ୍ଡ ଦାଆଡ଼ ମୁହଁର ଅଧାଅଧି ମାଡ଼ିଗଲାଣି । ପଣ ପଣ ମାଛି ଭଣଭଣ କରୁଛନ୍ତି । ମେଞ୍ଚାକୁ ମେଞ୍ଚା ପୋକ ଘାଆରୁ ଝଡ଼ିପଡ଼ୁଛନ୍ତି । ଜଣା-ଯାଏ, ବର ବିଦା ବାଦେ ମହାନ୍ତ ବାହାର ସବୁ କବାଟ ଭଲକର କଳା ଦେଇ ଘରକୁ ଶୋଇବାକୁ ଯାଉଥିଲା, ଯାଇ ପାରି ନାହିଁ । ଦୁଆରବନ୍ଧ ପାଖରେ ପଡ଼ିଯାଇଛି । ଠଙ୍କା ଥଳଟା ଯାହା ସିଇଁ ରଖିଥିଲା, ପାଖରେ ପଡ଼ିଛି ।

ଜାତିଭାଇମାନେ, ପୁରୋହିତ ସମସ୍ତେ ମଠରେ ମହନ୍ତଙ୍କ ପାଖରେ ବସିଛନ୍ତି । ସତ୍କାରର ବିଚାର ଲାଗିଛି । ମାତ୍ର ଗୋଟାଏ କଥା ଉଠିଲା, ମାଛିଆ ପାତକ ହୋଇଛି, ଛୁଇଁବ କଏ ? ଯେ ଛୁଇଁବ, ସେ ପ୍ରାୟଶ୍ଚିତ୍ତ କରିବ । ଢ଼େର ତର୍କବିତର୍କ ଉତ୍ତାରେ ସ୍ଥିରହେଲା, ପ୍ରାୟଶ୍ଚିତ୍ତ ଖର୍ଚ୍ଚା ସକାଶେ ମହନ୍ତଙ୍କ ଲୋକ ମହାନ୍ତ ମରେଇରୁ ଦୁଇ ପୌଟି ଧାନ କାଢ଼ିଦେବେ, ପୁରୋହିତ ମହାବିଷ୍ଣୁ ପାଦୋଦକ ମନ୍ତ୍ରି ଦେବ, ସେହି ପବିତ୍ର ପାଣି ଛିଞ୍ଚି ଦେଲେ ମଡା ଉପରୁ ସବୁ ପାପ ଧୋଇଯିବ । ମହନ୍ତେ ପୁରୋହିତେ ବିଶୁ ରଥଙ୍କୁ ପଚାରିଲେ, "ହୋଇ ହୋ, ମହାନ୍ତଙ୍କୁ ମାଛିଆ ପାତକ ଲାଗିଲା କାହିଁ ?"

ରଥେ କହିଲେ, ଆଜ୍ଞା ! ପୁରାଣ ଶାସ୍ତ୍ରରେ ଲେଖାଅଛି—
"ବୁଢ଼ା ବରେ ଝିଅ ବିକେ ଯେ ଲୋକ
ସେ ଲୋକ ମୁଣ୍ଡରେ ପଡଇ ପୋକ ।"

ଆଜ୍ଞା, ପ୍ରମାଣ ଦେଖନ୍ତୁ — ଠିକ୍ ମୁଣ୍ଡରେ ମାଛିଆ ପାତକ, ଗୋଡରେ ନୁହେଁ, ହାତରେ ନୁହେଁ, ପିଠିରେ ନୁହେଁ—ଠିକ ମୁଣ୍ଡରେ । ଶାସ୍ତ୍ର କଥା କଣ ଅନ୍ୟଥା ହେବ ?

ଆଠଜଣ ଜାତିପୁଅ ନାକରେ ଲୁଗା ଗୁଡ଼ାଇ ଭିତରକୁ ଗଲେ । କାଲେ ମଡ଼ା ଦେହରେ ଆଉ କିଛି ପାତକ ଲାଗି ରହିଥିବ—ସେ ପାପ ଧୋଇ ଯିବାଲାଗି ହାଣ୍ଡି ଏ ଗୋବରପାଣି ମଡା ମୁଣ୍ଡଠାରୁ ଗୋଡ଼ଯାଏ ଛିଞ୍ଚିଦେଲେ ।

ଗାଁ ଗୋହିରୀ ମଝିରେ 'ହରି ବୋଲ ! ରାମନାମ ସତ୍ୟ ହେ' ଗୋଟାଏ ଉତ୍କଟ ରଡ଼ି ସମସ୍ତେ ଶୁଣିଲେ । ସବୁ ଶେଷ ! ଏତେ ପଚାମଡ଼ା, ପୋଡ଼ୁଛି କିଏ ? ମଶାଣି କିଆବାଡି ତଳେ ଥୋଇ ଦେଇ ଆସିଲେ ।

ଝିଅ ଜୁଆଁଇଁ ଆସି ବୁଢ଼ାର କ୍ରିୟାଂଠା ଭଲକରି କଲେ । ଗାଁ ଜାତି ଅଜାତି ସମସ୍ତଙ୍କୁ ନିମନ୍ତ୍ରଣ ଦେଇ ଖଜା, କାକରା, ପିଠା, ପାଚୁଆ, ତର୍ପିକରି ଦୁଇତିନ ଥର ଖୁଆଇଲେ । ଗାଁରେ ଝିଅ ଜୁଆଁଇଙ୍କର ଖୁବ୍ ପ୍ରଶଂସା ଉଠିଲା ।

ମଠ ଧରଦଉଆ ବିନୋଦଆର ନାମ ଏବେ ଜମିଦାର ବାବୁ ବିନୋଦବିହାରୀ ମହାନ୍ତି । ଗୋପାଳପୁର ତାଲୁକା ଜମିଦାରୀଟା କିଣିଲାଣି । ସଦର ଗୁମାସ୍ତା ଯୋଡ଼ାଏ, ସଦର ପାଇକ ଆଠ ଦଶଟା, ରୁଚିଖଞ୍ଜା ଧୂଳିଆ ଘର ବନାଇ ପକାଇଲାଣି । ବାହାରୁ ଦେଖିଲେ ଗୋଟାଏ ବଡ ଜମିଦାରି ଘର ବୋଲି କିଏ ନ କହିବ ?

ବାହାର ଲୋକେ ଅନୁମାନ କରନ୍ତି, ମାଧ ମହାନ୍ତି ଘରେ ଟଙ୍କା ଦୁଇଲକ୍ଷ ପୋତା ଥିଲା ।

"ଅରକ ଛୁଅଁ କୃପଣ ମରେ,
ଗୁଡମାଠିଆ ମାଛିଆ ମାରେ ।"

## କାଳିକା ପ୍ରସାଦ ଗୋରାପ

ବାବୁ ଶିବପ୍ରସାଦ ଚୌଧୁରୀଏ କହିଲେ "ଆଜି ଦିନ ଦୁଇ ପ୍ରହର ବେଳେ ସଭା ବସିବା କଥା, କାଲି ଉପରଓଳିଠୁଁ ମହାଜନମାନଙ୍କୁ ଜଣାଇ ଦିଆଯାଉଛି—ଦେଖନ୍ତୁ, ଉଚ୍ଛୁଣିକା ଚଉଦ ଘଡ଼ିବେଳ ଟଳିବାକୁ ବସିଲାଣି। ସମସ୍ତଙ୍କର ଦେଖାସାକ୍ଷାତ ନାହିଁ, ଭଲା ଦରକାରୀ କାମରେ ଏପରି ମଠ କଲେ କି ଚଳେ ?"

ବାବୁ ଜଗବନ୍ଧୁ ମଲ୍ଲେ କହିଲେ, "ହେଉ, ହେଉ, ଆହେ ମାଗୁଣି ମହାନ୍ତିଏ, ଲେଖି ପକାଉନ୍ତୁ ତ ! କିଏ କିଏ ବାବୁ ଆସିଲେ, ଖଣ୍ଡେ କାଗଜରେ ସେମାନଙ୍କ ନାମ ଟିପିଯାଆନ୍ତୁ ।"

ଗୁମାସ୍ତା ମାଗୁଣି ମହାନ୍ତିଏ ଫର୍ଦେ ବାଲେଶ୍ୱରୀ ଛଣି କାଗଜ ଟାର କାଟିଲା ପରି ଆଠ ଭାଙ୍ଗ କରି ଚୌତିଲେ । ପାଖରେ ଗୋଟାଏ ମାଟି ଦୁଆତରେ ଅଧେ କନା ଅଧେ କାଳି ପୂରା ଥିଲା, ଗୋଟାଏ ଶରକାଠି କଲମ ଧରି ଲେଖିବାକୁ ଲାଗିଲେ—

ଶ୍ରୀ ଶ୍ରୀ ଶାମରାଏ ମହାପ୍ରଭୁଙ୍କ ଚରଣେ ଶରଣ ।

ଭୁଜ ଷୋଳ ଦିନ ଶୁକ୍ଳ ଦୁଆଁ ଗୁରୁବାର ବାବୁ ରଘୁନାଥ ଦେଙ୍କ ଘରଠାରେ ସଭା ବସିଲା, ଏହି ବାବୁମାନେ ସଭରେ ବିରାଜମାନ କଲେ ।

୧ । ଶ୍ରୀ ଶ୍ରୀ ବାବୁ ରଘୁନାଥ ଦେ
୨ । ଏଜନ୍ମ ଶିବପ୍ରସାଦ ଚୌଧୁରୀ
୩ । ଏଜନ୍ମ ଜଗବନ୍ଧୁ ମଲ୍ଲେ
୪ । ଏଜନ୍ମ ରାମଦାସ ମହାପାତ୍ରେ
୫ । ଏଜନ୍ମ ନାକଫୋଡ଼ି ନାୟକେ

୬ । ଶ୍ରୀ ଶ୍ରୀ ବାବୁ ନବଘନ ଶ୍ୟାମସୁନ୍ଦର ପ୍ରସାଦ ରାଉତେ
୭ । ଏଜ୍ଞ ପରମ ପରଜା
୮ । ଏଜ୍ଞ ଚରମ ଦାସେ

ଗୁମାସ୍ତା ନାମ ଲେଖି ସାରି ଯେଉଁ ଯେଉଁ ଅକ୍ଷରରେ ବହଳ କାଳି ଲାଗି ଶୁଖି ନ ଥିଲା, ଖଣ୍ଡେ ସଫା ସରୁ କନାରେ ସରୁ ବାଲିବନ୍ଧା ପୁଟୁଳା ସେଥିରେ ଆପି ଦେଇ ନାମ ଡାକଦେଲେ ।

ବାବୁ ଚରଣ ଦାସ କହିଲେ, "ହେଲା—ହେଲା, ଯେଉଁମାନଙ୍କର ଆସିବାର ନିହାତି ଦରକାର, ସେମାନେ ତ ଆସିଗଲେ, ଆଉ କାହାରି ଆସିବାର ଥିଲେ ପଛରେ ଆସୁଥାନ୍ତୁ । ଆଉ ବସିବାର ଲୋଡ଼ା ନାହିଁ ।"

ବାବୁ ପରମ ପରଜା କହିଲେ, "ଆହେ ଚୌଧୁରୀ ସାଆନ୍ତେ ! ଆଜ ସଭାରେ କ'ଣ କଥା ଅଛି ପକାନ୍ତୁ, ଆଉ ମଠ କ୍ୟାଁ ?"

ବାବୁ ଶିବପ୍ରସାଦ ଚୌଧୁରୀଏ କହିଲେ,"ଆଉ କହିବୁଁ କ'ଣ ? ସମସ୍ତେ ତ ଏକା ନାରେ ବସିଛୁଁ, ଯେଉଁ ଗଜବନ୍ଧନୀ ପଡ଼ିଲାଣି, ଜାହାଜାତି କାରବାର ଏଣିକି ଇତି । ସମସ୍ତେ ତ ଦେଖୁଛନ୍ତି, ଆଜକୁ ବର୍ଷ ଦେ'ଟା ଭିତରେ ପରଜା ବାବୁଙ୍କର ରାଜରାଜେଶ୍ୱରୀପ୍ରସାଦ, ମଲ୍ଲିଙ୍କର ଦୁର୍ଗାପ୍ରସାଦ, ଧରନ୍ତୁ ମୋର ଲକ୍ଷ୍ମୀପ୍ରସାଦ, ନାୟକ ବାବୁଙ୍କର ଉମାପ୍ରସାଦ, ଏବେ ଦେଖନ୍ତୁ ଦେ'ବାବୁଙ୍କର କାଳିକାପ୍ରସାଦ । ପାଣି ନାହିଁ, ପବନ ନାହିଁ, ଲାଗଲାଗ ପାଞ୍ଚ ଖଣ୍ଡ ବାହାର ଦରିଆରେ ଗୁମ । ଆମ୍ଭେମାନେ ମନରେ କରିଥିଲୁଁ, ଡୁବି ପାହାଡ଼ରେ ଠୋକର ବାଜିଯାଉଛି । ଦରିଆ ଭିତରେ ଢ଼େର ବୁଡ଼ନ୍ତ ପାହାଡ଼ ଡୁବି ରହିଛି, ଭଟା ବେଳେ ଟିକିଏ ଟିକିଏ ମୁଣ୍ଡ ଦିଶେ, ଜୁଆର ବେଳେ ଲୁଚିଥାଏ । ଏଣେ ଜାହାଜ ତ ଘୋଡ଼ାପରି ଧାଇଁଥାଏ, ମାଝି କଳି ପାରେ ନାହିଁ, ପାହାଡ଼ ଛୁଇଁଲା ତ ଛତୁ ! ଏବେ ସବୁ ପ୍ରସଙ୍ଗ ସାଫ ଧରାପଡ଼ିଗଲା । ଆହେ ଦେ ସାଆନ୍ତେ, ଆପଣଙ୍କ ଚଣ୍ଡେଲକୁ ଡାକନ୍ତୁ ତ, ବାବୁମାନଙ୍କ ଆଗରେ ସବୁ ହାଲ ବୟାନ କରିଯାଉ ।"

ବାବୁ ରଘୁନାଥ ଦେ ଡାକିଲେ—"ଆରେ ହରି ଚଣ୍ଡେଲ ! ମୂଳରୁ ଶେଷଯାଏ କ'ଣ ଘଟିଲା, ବାବୁମାନଙ୍କ ଆଗରେ ବୟାନ କରି ଯା ତ । ଖବରଦାର ! ପଦେ ବି ଛାଡ଼ିବୁ ନାହିଁ ।"

ହିଗ୍ରୁ ତଣ୍ଡେଲ ଗାମୁଛା ଖଣ୍ଡ ବେକରେ ପକାଇ ବାବୁମାନଙ୍କୁ ଜଣ ଜଣ କରି ଭୂଇଁରେ ମୁଣ୍ଡ ଲଗାଇ ଦଣ୍ଡବତ କଲା । ତହିଁ ବାଦେ ବାବୁମାନଙ୍କ ମୁହଁକୁ ଅନାଇ କହିବାକୁ ଲଗିଲା--

"ଆଜ୍ଞା, ଗଲା ବରଷ ମକର କୃଷ୍ଣ ଦୁତିଆ ଦିନ ଦି' ପହରିଆ ଭଟାରେ ଆମ୍ଭେମାନେ ଚାରିଖଣ୍ଡ ଜାହାଜ ବନ୍ଦର ଘାଟରୁ ଗଡ଼ିଗଲୁଁ । ନଈ ଭିତରେ ଭଟା ଧରି ଯାଉଁ ଯାଉଁ ତିନିଦିନ ଦିନ ଉପରଓଳି ମୁହାଣ ଟପି ସଞ୍ଜବେଳେ ଦରିଆରେ ଲଙ୍ଗର କଲୁଁ । ଚାରି ଜାହାଜଯାକ କୋଶକୋଶକ ଛଡ଼ା ଲଙ୍ଗର କରିଥାଉଁ । ତହିଁ ଆରଦିନ ଖୁବ୍ ସକାଳେ ପୂର୍ବ ଦିଗରେଯିମିତି ସୁନ୍ଦରି ଫାଟିଛି, ସମସ୍ତେ ଏକ ସଙ୍ଗରେ ଲଙ୍ଗର ହାବସ କଲୁଁ । ଦୁଇଖଣ୍ଡ ଗୋରାପ ବାଉଟା ହଲାଇ ଆମ୍ଭମାନଙ୍କୁ ଦଣ୍ଡବତ କଲେ । ଆମ୍ଭମାନଙ୍କ ମାଟି ସେହିପରି ବାଉଟା ବଞ୍ଚିଲେ । ସେ ଗୋରାପ ଦି'ଖଣ୍ଡ ଦକ୍ଷିଣ ମୁହାଁ ହକାରିଲେ, ଖଣ୍ଡେ ଗଲା ଲକଡ଼ ଦ୍ୱୀପ, ଆଉ ଖଣ୍ଡେ ଗଲା କଲମ୍ବା ବନ୍ଦର । ଲକଡ଼ଦ୍ୱୀପ ଜାହଜ ବୋଝେଇଥିଲା ଚୁଡ଼ା ଆଉ ଭତରନ୍ଧା ହାଣ୍ଡି (*) । କଲମ୍ବା ଜାହାଜରେ ମାଲ ଥିଲା ଭୁଛା ଚାଉଳ ; ଆଉ ନାୟକ ବାବୁଙ୍କର ଦୁର୍ଗାପ୍ରସାଦ ସୁଲୁପ ଉତ୍ତରମୁହାଁ ଗଙ୍ଗା ନଈ ମୁହାଣ ବାଟରେ ସୂତାନୁଟି (କ) ହାଟ ଆଡ଼େ ଗଲା । ଆମ୍ଭେମାନେ ଯବଦ୍ୱୀପ— ବତାବୀ ବନ୍ଦର ଦିଗକୁ ପୂର୍ବମୁହାଁ ହକାରିଲୁଁ । ସେତେବେଳେ ପଚ୍ଛିମା ସୁଲସୁଲିଆ ପବନ ମାରୁଥାଏ । ସଳଖରେ ମଙ୍ଗଟା ଧରିଥାଉଁ, ଦିନ ନାହିଁ, ରାତି ନାହିଁ, ଜାହାଜ ଧାଇଁଛି । ବାହାର

---

*ବାଲେଶ୍ୱରରେ ପ୍ରବାଦ—ଲଙ୍କାଦ୍ୱୀପଦୁଇଜ ମାଟିରେ ହାଣ୍ଡି ପ୍ରସ୍ତୁତ ହୁଏ ନାହିଁ, ବାଲେଶ୍ୱରରୁ ଭତରନ୍ଧା ହାଣ୍ଡି ସେଠାକୁ ଯାଉଥିଲା । ଲେଖକ ପିଲାକାଳରେ ଦେଖିଅଛି, ଖଣ୍ଡି ଏ ମାଲ୍ଲା-ହୁଡ଼ (ସେ ଦେଶ ଜାହାଜକୁ ହୁଡ଼ି ବୋଲାଯାଏ) ଅସିଲେ ସ୍ୱରପାଖେ ଗୁରିକୋଶ ମଧ୍ୟରେ ଯେତେ ଶ୍ମଶାନକଳସୀ ଅଉ ବାଇଚ ହାଣ୍ଡି ପଡ଼ିଥାଏ ପାଣ ମେହୁନ୍ତରମାନେ ସେ ସବୁ ଗୁଣ୍ଡାଇ ହୁଡ଼କୁ ବିକନ୍ତି—ସେମାନେ ପଇସା ନ ଦେଇ ନଡ଼ିଆ ଦିଅନ୍ତି । ସେ ଜାହାଜରେ ନଡ଼ିଆ ପୁର୍ଣ୍ଣ ହୋଇ ଅସିଥାଏ ।

(କ) ସୂତାନୁଟି ସ୍ଥାନ ଜଙ୍ଗଲମୟ ଥିଲା । ୧୬୯୦ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ଜଙ୍ଗଲ କାଟି ହାଟ ବସାଇଲେ । ଏହିସ୍ଥାନରେ କାଳିଦେବୀଙ୍କର କୋଠାମନ୍ଦିର ଅଛି, ଏଥିପାଇଁ ଏହାର ନାମ ସୂତାନୁଟି ହାଟ ବା କାଳୀ କୋଠା । କାଳକ୍ରମରେ ଏହାର କାଳୀକୋଠା ନାମ ଅପଭ୍ରଂଶରେ କଲିକତା ହୋଇଅଛି ।

ଦରିଆରେ ଦିନ ରାତି ସବୁ ସମାନ । ରାତିରେ ଉତ୍ତରପଟ ଧୋବତାରା ଆଉ ଶେଷ ରାତିଆ ପୂର୍ବଦିଗ ପୋଆତାରା ଦିଶିଲେ ବାଟ ଦିଶିଯାଏ । ଗୁରୁବାର ଦିନ ବଡ଼ ସକାଳେ ପୂର୍ବଦିଗ ସମୁଦ୍ର ଭିତରେ ସୂର୍ଯ୍ୟଦେବତାଙ୍କ ଫେନ୍ଦ ଯିମିତି ଦିଶିଲା, ସେଇ ଦିଗରେ ଦଶ କୋଶ ହେବ ଦୂରରେ ଖଣ୍ଡେ ଜାହାଜର ଶେଡ଼ ଦିଶିଲା । ଜାହାଜଖଣ୍ଡ ଆମ୍ଭମାନଙ୍କୁ ଲକ୍ଷ୍ୟ କରି ଧାଇଁଥାଏ । ତାହାବାଦେ ଦିଶିଲା ଜାହାଜର ବାହୁଟିଆ କୁନ୍ଦା (୧) ଆଉ ସଂଫରଦାସ୍ତି ରସି (୨) ଉପରେ ଦୁଇଟା ବଡ ବଡ ଲାଲ ପତାକା ଉଡ଼ୁଛି । ମୁଁ ନାବରା ଦଉଡ଼ି (୩) ଧରି ଚଉକା (୪) ଉପରକୁ ଉଠିଯାଇ ଦୂରବିଣ୍ କଷିଦେଲି । ଏତିକବେଳେ ଦୁମ୍ ଦୁମ୍ କରି ସେଇ ଜାହାଜରୁ ଚାରି ପାଞ୍ଚଟା ବୋମ୍ ଫାଏର ହେଲା । ଆମ ମାଝି ଗୁନିଆ ହେଲା ପରି ଚଞ୍ଚଳ ଡାକଦେଲା, ଗାମଦ (୫)—ଗାମଦ—ପୂବ—ପୂବା ଆମ କାଳିକାପ୍ରସାଦ ବାଟ ବଦଳି ପୂର୍ବ ହେଇଆ ବସିଲା । ସେ ଜାହାଜ ବି ଆମ ଆଡ଼କୁ ଧାଇଁଥାଏ । ଦିନ ପହରକବେଳେ ଦୁଇ ଜାହାଜ ଭେଟାଭେଟି, ଠୋକର ଲାଗେ ଲାଗେ ।”

ଚୌଧୁରିବାବୁ କହିଲେ—ଆରେ, ତୁମେମାନେ ନ ବୁଝି ନ ସୁଝି କ୍ୟାଁ ସେ ଜାହାଜ ପାଖକୁ ଧାଇଁଲ ?

ହରୁ ତଣ୍ଡେଲ—ଆଜ୍ଞା, ଖଣ୍ଡେ ଜାହାଜରେ ବିପଦବାଉଟା ଉଡ଼ିଲେ ଆଉ ରକମ ବିପଦ ହେଲେ, ଆଉ ଜାହାଜ ତା’ ପାଖକୁ ଧାଇଁବେ, ଦରିଆ ଠାକୁରାଣୀଙ୍କର ଏଇ ରକମ ହୁକୁମ ।

ତା ବାଦେ କଣ ହେଲା କି, ସେ ଜାହାଜ ଉପରେ ବାଳୁଆ କଳା-କନା ପିନ୍ଧା ଆଠ ଦଶ ଜଣ ତୁରୁକ ଛିଡ଼ା ହୋଇଥିଲେ, ଧୀବର ଗଲାପରି

---

(୧) ବାହୁଟିଆ-କୁନ୍ଦା—ଜାହାଜର ପଶ୍ଚାତ୍ ଭାଗରେ ପତାକା ଉଡ଼ିବାର ସ୍ତମ୍ଭ ।

(୨) ସଫରଦାସ୍ତି ରସି—ଜାହାଜର ସମ୍ମୁଖ ସଫରଦାଣ୍ଡିଆଠାରୁ ଡୋଲ ମୁଣ୍ଡକୁ ବନ୍ଧା ଦଉଡ଼ି ।

(୩) ନାବରା ଦଉଡ଼ି—ଜାହାଜ ଦୁଇ ପାଖରେ ଡୋଲ ମସ୍ତକ ପର୍ଯ୍ୟନ୍ତ ଜଣୁଗି ପରି ବନ୍ଧା ଛନଟା ଦଉଡ଼ି ।

(୪) ଚଉକା—ଡୋଲ ଉପରେ କର୍ମଚାରୀମାନଙ୍କ ବସିବାର ଜଣିକଳ ଝୁଲିବା ସ୍ଥାନ ।

(୫) ଗାମଦ—ଜାହାଜ ତଳ ଫଟା ହୋଇ ପାଣି ପଶିବା ।

ଚଞ୍ଚଳ ଡାକଲେ, ପାଗଡ଼ପା--ଗଡ଼--ମାଗଡ଼ (୭) । ଖଲାସୀମାନେ ଗୁରଖଣ୍ଡି ଯିମିତି ଫୋପାଡ଼ ଦେଉଛନ୍ତି, ଭୂରକମାନେ ଦୁଇ ଜାହାଜକୁ ସଙ୍ଗଡ଼ ପକାଇଲେ । ଅମ ଖଲାସୀମାନେ ବ ଦୁଇ ଜାହାଜ ପେରସ୍ତ (କ) ଆଉ କାଣ୍ଟିରେ (ଖ) ସଙ୍ଗୁଡ଼ିଥାନ୍ତି । ଦୁଇ ଜାହାଜ ଯିମିତି ସଙ୍ଗଡ଼ା ଯାଇଛି, ସେ ଜାହାଜ ଗୁପଦାର (ଗ) ଆଉ ଖୋଳ (ଘ) ଭିତରୁ ଅନ୍ଦାଜ ଦୁଇ କୋଡ଼ିରୁ ବଳେବ, ଝପ୍ ଖପ୍ କରି ଅମ ଜାହାଜକୁ ଡେଇଁ ପଡ଼ିଲେ । ସେମାନଙ୍କ ରୂପ ଦେଖି ଅମ୍ଭେମାନେ ତାଟଙ୍କା ହୋଇଗଲୁଣି । କାହାରି ଗୋଡ଼ ହାତ ଚଳୁ ନାହିଁ, କାଠନି ପରି ଛିଡ଼ା ହୋଇଥାଉଁ । ଲୋକଗୁଡ଼ାକ ପଞ୍ଚହାତା ମର୍ଦ୍ଦ, ସେଇ ରକମ ମୋଟା, ରାକ୍ଷସ ପରି କଳୁଆ, ଫିରଙ୍ଗୀ ପରି ମୁହଁ ରଙ୍ଗା ରଙ୍ଗା । ସେହିପରି ଏକ ରକମ ପୋଷାକ, ମୁଣ୍ଡରେ ଟୋପି, ମନ୍ଦାରଫୁଲ ପରି ଆଖି ଲାଲ । ମୁହଁରୁ ମଦଗନ୍ଧ ଭକ ଭକ ବାହାରୁଛି । ସବୁଗୁଡ଼ାକ ମଉଆଲ, ଧାଉଁଆ ମାଙ୍କଡ଼ ପରି ଆମ ଜାହାଜ ଉପରେ ଧାଁ ଦଉଡ଼ ଲଗାଇଥାନ୍ତି । ହାତରେ ବଙ୍କା ବଙ୍କା ଲମ୍ବା ତରବାରି । ଅଣ୍ଟାପଟି ଏକ ପାଖରେ ତରବାରି ଖାପ, ଆର ପାଖରେ କଡ଼ାବନ (ଙ) ଝୁଲୁଥାଏ । ହ୍ୱପ୍ ହ୍ୱପ୍ ଶବ୍ଦ କରି ପାଟି କରୁଥାନ୍ତି । ଆମ୍ଭେମାନେ ତ କାବା ହୋଇ ଛିଡ଼ା ହୋଇଥିଲୁଁ, ହଳ ହଳ କରି ବାନ୍ଧି ପକାଇଲେ । ଆମ ମାଝି ଖପା ହୋଇ କଣ କହିବାକୁ ଯାଉଥିଲା, ଗୋଟାଏ ରାକ୍ଷସ ତରବାରିରେ ଯେ ଚୋଟେ ଦେଇଛି, ମୁଣ୍ଡଟା ପାଞ୍ଚହାତ ଦୂରରେ ଠିକରି ପଡ଼ିଲା, ଗଣ୍ଡିଟା ଟଳି ପଡ଼ି ଛଟପଟ ହେଉଥାଏ । ସେହି ରାକ୍ଷସଟା ମାଝି ମୁଣ୍ଡଟା ଆମ୍ଭମାନଙ୍କୁ ଦେଖାଇ କଣ ବର ବର କରି କହିଲା ବୁଝିପାରିଲୁ ନାହିଁ । ଆଉ ଗୋଟାଏ ରାକ୍ଷସ ହସି ହସି ମାଝି ଗୋଡ଼ ଧରି ଗଣ୍ଡିଟା ଦରିଆକୁ ଫୋପାଡ଼ି ଦେଲା । ତା ବାଦେ ଆମ୍ଭମାନଙ୍କୁ ଘେନିଯାଇ ତାଙ୍କ ଜାହାଜ ଗୁପଦାର ଭିତରେ ଭର୍ତ୍ତି କରି ଦେଇ ଗୋଟାଏ

---

(୭) ପାଗଡ଼—ଜାହାଜ ବନ୍ଧା ଦଉଡ଼ି ।

(କ) ପେରସ୍ତ—ଜାହାଜର ବାଡ଼ ।

(ଖ) କାଣ୍ଟ—ଜାହାଜ ଉପରେ ଥିବା ସରୁ ଦଉଡ଼ି ।

(ଗ) ଗୁପଦାର—ଜାହାଜ ଭିତରେ ମନୁଷ୍ୟ ରହିବା ଘର ।

(ଘ) ଖୋଳ—ଜାହାଜ ଭିତରେ ମାଲ୍ ରଖାଯିବା ଜାଗା ।

(ଙ) କଡ଼ାବନ—ସାନ ସାନ ମୋଟା ବନ୍ଧୁକ ।

କୋଲପ ଲଗାଇଦେଲ । ଆମ୍ଭେମାନେ ମଲାପରି ପଡ଼ିଥାଉଁ । ରୋଜ ସକାଳେ ଅଧ ଅଧ ସେର ଅଧାଳ ଚୂଡ଼ା ଆଉ ଢ଼ାଳେ ଢ଼ାଳେ ପାଣି ଦେଇଯାଏ—କିଏ ଖାଇଲା, କିଏ ନ ଖାଇଲା । ଶିଙ୍କର ବେହେଗ ମିଞ୍ଚା (ଚ) ପେଟରେ ଗୋଟାଏ ସ୍ୱଷସ ଯୋତାମିଶା ଯୋଡ଼ାଏ ଗୋଇଠା ମାରିଥିଲା, ସେ ପଡ଼ି ମଡ଼ି ଦି ଦିନେ ମରିଗଲା । ଆମ୍ଭେମାନେ ଦରିଆକୁ ଫୋପାଡ଼ିଦେଲୁଁ; ସେ ହାଡ଼ଗୁଡ଼ାଙ୍କୁ ଛୁଇଁବାକୁ ଦେଲ ନାହିଁ । ଛନିଦିନ ଦିନ ଓପରଓଳି ବେଳ ରତରତ; ଗୋଟାଏ ମୁଲକରେ ଜାହାଜ ଲଙ୍ଗର କଲା । ପଛନ୍ତେ ଜାଣିଲୁଁ, ସେଇଟା ମୁଲକ ନୁହେ; ଦରିଆ ଭିତରେ ଗୋଟାଏ ଟାପୁ । ତା ନାମ ଛନ୍ଦେଦ୍ୱୀପ । ଆମ୍ଭମାନଙ୍କୁ ନେଇଯାଇ ଗୋଟାଏ ଜେଲଖାନାରେ ବନ୍ଦୀ କଲେ । ଆହୁରି ବି ଢ଼େର ବନ୍ଧଆଣ ସେ ଘରେ ବନ୍ଦୀ ହୋଇ ପଡ଼ିଛନ୍ତି । ମାସକ ବାଦେ ଆମ୍ଭମାନଙ୍କୁ ଘରୁ କାଢ଼ି ଅଲଗା ଅଲଗା କରିଦେଲେ । କେହି କାହାରି ମୁହଁ ଦେଖିବାକୁ ନାହିଁ । ଘରୁ କାଢ଼ି ଗୋଟାଏ ତୁରକ ଆମ୍ଭମାନଙ୍କୁ ତା କଥାରେ ବୁଝାଇ ଦେଲା, ହୁକୁମ ନ ମାନି ପଳାଇବାକୁ ଚେଷ୍ଟା କଲେ ମାଡ଼ି ଦଶା ହେବ । ସେ ଦେଶରେ ଗୋଟାଏ ରଜା ଅଛି ସେଇଟା ଭଲ ରଜା ନୁହେ; ଡ଼କାଇତ ରଜା । ସେଟାର ନାମ ଗଞ୍ଜାଇଲିଶ (Ganjalish), ଆହୁରି ବି ସେ ରଜାର କେତେଜଣ ସରଦାର ଅଛନ୍ତି । ପଛନ୍ତେ ସେମାନଙ୍କ ନାମ ଜାଣିଲି; କପ୍ତାନ ମାଲପିକା (Gaptain Malpica) ଜୁକରିଥୁଆ (Jucatte), ହଗ୍ରୀ ବୁସ (Haxary Buse), ମେସ୍ତର ଦିକସ୍ତ (Mister Decsta) । ଆହୁରି ବି ସରଦାର ଅଛନ୍ତି; ସେମାନଙ୍କ ନାମ ପାଟଶୋଗଲଟି । ଫିରିଙ୍ଗୀ ପାଇକ, ତୁରକ ପାଇକ ବି ଢ଼େର ଅଛନ୍ତି ।”

ବାବୁ ନାକଫୋଡ଼ ମଲ୍ଲି ପଚାରିଲେ—ସେ ରଜା ଜାତିରେ କଣ ? ସେ କଣ ଫିରିଙ୍ଗୀ ?

ହରୁ ଚନ୍ଦ୍ରେଲ—ଆଜ୍ଞା, ସେମାନେ ପାଟୁଆଗାଲି ଜାତି (Portuguese) ଏଇ ଫିରିଙ୍ଗୀମାନଙ୍କ ପରି ।

ବାବୁ ନାକଫୋଡ଼ ମଲ୍ଲି—ସେ ରଜା କ'ଣ ଆପେ ଡ଼କାଇତି କରିବାକୁ ଯାଏ ?

---

(ଚ) ମିଞ୍ଚା-ଜାହାଜର ଖଲାସୀମାନଙ୍କ ଉପରେ ସରଦାର ଏବଂ ଗୋଦାମରକ୍ଷକ ।

ବଗ୍ରୁ ଚଣ୍ଡେଲ--ଆଜ୍ଞା ନାହିଁ, ଯେଉଁମାନେ ଡ଼କାଇତି କରିବାକୁ ଯାନ୍ତି, ବଡ଼ ବଡ଼ ଡ଼କାଇତିବେଳେ ରଜା ଆପେ ଯାଏ । ରଜାର ଜାହାଜ ଢ଼େର, ଡ଼କାଇତି କରିବ ଢ଼େର ଜାହାଜ ଆଣିଛି । ସେଇ ଅସୁର ପାଇକମାନେ ଜାହାଜ ଚଢ଼ି ଡ଼କାଇତି କରିବାକୁ ଯାନ୍ତି । ହଁ, ଗୋଟାଏ କଥା କହିବାକୁ ଭୁଲିଯାଇଛି । ଯେବେ ଆମ ଖ୍ରୀ ମା ଖଲାସୀକୁ ଦେଖିଥିଲି— ତା ଉପରେ ଯିମିତି ନଜର ପଡ଼ିଛି, ଧାଇଁ ଆସି ମତେ କୁଣ୍ଢେଇ ପକାଇଲା । ଦୁଇଜଣଯାକ କୁଣ୍ଢି ଆକୁଣ୍ଢେଇ ହୋଇ ଡ଼କା ପାରୁଥାଉଁ, ଗୋଟିଏ ଫିରିଙ୍ଗୀ ଧାଇଁ ଆସି ଆମ୍ଭମାନଙ୍କୁ ବେତରେ ବାଡ଼େଇ ଅଲଗା କରିଦେଲା; ମୁଁ ଆଉ ତାକୁ ଦେଖିନାହିଁ ।

ବାବୁ ରଘୁନାଥ ଦେ ପଚାରିଲେ—ତୁ ଆସିଲୁ କିପରି ?

ବଗ୍ରୁ ଚଣ୍ଡେଲ—ଡ଼ାକା ବୋଲି ଗୋଟାଏ ମୁଲକ । ସେ ଦେଶରେ ଗୋଟାଏ ବଡ଼ ଧନବନ୍ତ ଜମିଦାର ଅଛି । ଗଞ୍ଜାଳିଶ ସନ୍ଧାନ ପାଇ ଦଶଖଣ୍ଡ ଜାହାଜରେ ଚାରି ପାଞ୍ଚଶ ପାଇକ ଧରି ଡ଼କାଇତି କରିବାକୁ ବାହାରିଲା । ମୁଁ ଜାହାଜରେ ଜଣେ ଖଲାସୀ ଥିଲି । ଡ଼ାକାରେ ପହଞ୍ଚି ପାଇକମାନେ ଯିମିତି ଜାହାଜରୁ ଓହ୍ଲାଇଗଲେ, ସଞ୍ଜସଞ୍ଜିଆ ମୁହଁ ଅନ୍ଧାରିଆ ହୋଇଥାଏ, ମୁଁ ପଳାଇ ଆସିଲି । ଛ ମାସ କାଳ ଢ଼େର ଢ଼େର ଜଙ୍ଗଲ, ଢ଼େର ଢ଼େର ମୁଲକ ବୁଲି ବୁଲି ଲୋକଙ୍କୁ ପଚାରି ପଚାରି ଆସିଲି ।

ବାବୁ ରାମରାମ ପାଟେ କହିଲେ—ଆପଣମାନେ ତ ସବୁ କଥା ଶୁଣିଲେ । ଏବେ ସବୁ କଥା ପଦାରେ ପଡ଼ିଗଲାଣି । ଏତେ ଗୁଡ଼ାକ ଜାହାଜ ଦରିଆରେ କୁଆଡ଼େ ଯାଉଛି ! କିଏ କେତେ ରକମ କହୁଥିଲେ, ସବୁ ସନ୍ଦେହ ମେଣ୍ଟିଗଲା । ଦରିଆରେ ଏପରି ବୋମ୍ବାଟିଆ ଲାଗିଲେ ଆଉ କିଏ ଜାହାଜଜାତି କାରବାର ଚଳେଇବ ? ଏଇ ଧରନ୍ତୁ ନା—ଦେ ବାବୁଙ୍କର ଦଶଖଣ୍ଡ ଅଛି ବୋଲି ସିନା ତାଙ୍କୁ ବାଧିଲା ନାହିଁ, ଛୁଟକୁରିଆ ମହାଜନ ହୋଇଥିଲେ ତାର ହାଲ କଣ ହୁଅନ୍ତା ?

ବାବୁ ରଘୁନାଥ ଦେ କହିଲେ—କଣ କହୁଛନ୍ତି ଆପଣ, ଦଶଖଣ୍ଡ ଜାହାଜ ? କାଳିକାପ୍ରସାଦ ମୋ ଅଣ୍ଟା ବସେଇ ଦେଇ ଯାଇଛି । ଅରଖ ନୂଆ ଗୋରାପ, ପୂରା ବୋଝେଇ, ଧରନ୍ତୁ ନା କେତେ ଟଙ୍କା ଗଲା ?

ବାବୁ ଚରଣ ଦାସ କହିଲେ—ଦେ ଆପଣେ ! ଟଙ୍କା ଅଙ୍କ ମାଘ ମାସରେ ଯେଉଁ ଗୋରାପ ଖଣ୍ଡ କାଚ୍ୟାର ହୋଇଥିଲା, ଏ ଜଣ ସେଶ୍ନ ଗୋରାପ ? ଅର୍ଜୁନ ମହାରଣା ମିସ୍ତ୍ରୀ ହାତଗଢ଼ା ଭଲ ଜାହାଜ ଖଣ୍ଡେ ଉତ୍ତୁରି ଥିଲା ଏକା—କଣ ବୋଝେଇ ଦେଇଥିଲେ ?

ବାବୁ ରଘୁନାଥ ଦେ—ସତ-ସତ, ଜାହାଜ ଗଢ଼ ଜାହାଜ ଥିଲା, ଗୃଲ ବ ସିମିତିକା—ମୁହାଁଣ ପାର ହୋଇଗଲେ ଦିନକେ ସୃତାକୁ ଖେପ ମାର ଦେଉଥିଲା । ହଁ—କଣ ପଗୃରିଲେ ? ବୋଝେଇ ମାଲ ? ଥିଲା ତି ହଜାର ମହଣ ଗୃଉଳ, ଦ ହଜାର ମହଣ ଲୁହା, ଦ ହଜାର ଟଙ୍କାର ଜିନା । ବତାବି ବନ୍ଦରରେ ଇଂରେଜ ଗହଳିମାନେ ସଫା ଗୃଉଳ ଗୃହାନ୍ତା କରନ୍ତି । ତେତେ ବେଳେ ଗୃଉଳ ଦର ଥିଲା ମହଣକୁ ଏଗାରଅଣା ଦୁଇପଇସା । ମୁଁ ଦୁପଇସା ବଢ଼େଇ ଦେଇ ବାର ଅଣ ରେ ସଫା ଧଳା ମାଲଟିକ କିଣି ପଠାଇଥିଲି । ଧରନ୍ତୁ କେତେ ଟଙ୍କା ଗଲା । ଘରେ ପିଲାଗୁଡାକ ସେ ଜାହାଜ ଖଣ୍ଡିକୁ ବଡ ଭଲ ପାଉଥିଲେ । ସେହିମାନଙ୍କ କଥାରେ ଜାହାଜରେ କାଠ ବଦଳରେ ଇସ୍ପାତର କପି-କଳ ସବୁ ଦେଇଥିଲି । ସେମାନେ ଜାହାଜ ବାହାର ସବୁ ଚିତ୍ର କରି ରଙ୍ଗବେରଙ୍ଗ ପତାକା ମଣ୍ଡେଇଥିଲେ । ମୁଁ ଖାଲି ଗୋବନ୍ଦା ପିଲା ବୁଦ୍ଧିରେ ପଡ଼ି ବତାବି ବନ୍ଦରକୁ ପଠାଇଲି, ନୋହିଲେ ବୈଶାଖପାଟଣାକୁ ପଠାଇଥାନ୍ତି ।

ବାବୁ ଚରଣ ଦାସ କହିଲେ—ହେଲେ କଣ, ଆଜ କାଲି ବତାବି ବନ୍ଦରରେ ଦ ପଇସା ଅଛି ।

ବାବୁ ପରମ ପରିଜା କହିଲେ--ସେ ସବୁ କଥା ଥାଉ,—ଏବେ ତ ସବୁ କଥା ହାଟରେ ପଡ଼ି ଦାଣ୍ଡରେ ଗଡ଼ିଲଣି -ମୋ ଜାଣିବାରେ କୋଠାଏ ଭଲ ରକମ କଟକଣା ନ କଲ ଜାହାଜ ଦରିଆକୁ ଛାଡ଼ିବା ଠିକ୍ ହେଉନାହିଁ ।

ବାବୁ ରାମରାମ ପାଢ଼ୀ କହିଲେ—ଜାହାଜ ଦରିଆକୁ ନ ଛାଡ଼ି ଗୁଦରେ (୧) ବାନ୍ଧି ରଖିବୁ ? ଗୃୈର ହେଉ, ଡକାଇତ ହେଉ, ଜାହାଜ ଦରିଆକୁ ପଠାଇବାକୁ ହେବ । ମୁଁ କହୁଛି, ଉତ୍ତରପୂର୍ବ ଦାଣ୍ଡି ଗୁଡ଼ି ଦେଇ ଖାଲି ଦକ୍ଷିଣ ଖେପ ମାରିବା । ଏ ଦିଗକୁ ସେ ବୋମ୍ବାଟିଆ ଗୁଡ଼ାକ ଆସି ନାହାନ୍ତି ।(୨)

(୧) ଗୁଦ ଜାହାଜ ରଖା ସ୍ଥାନ, ଇଂରେଜରେ ଡକ୍ ।
(୨) ବୋମ୍ବାଟିଆ—ଜଳଦସ୍ୟୁ ।

ବାବୁ ଚରଣ ଦାସ କହିଲେ—ଉଁ-ହୁଁ, ସେ କଥା ନୁହେଁ । ଦକ୍ଷିଣ ଦାଣ୍ଡିରେ ଅଳ୍ପ ନାହାନ୍ତି, କାଲି ଆସିବାକୁ କେତେ ମଠ ? ସେଗୁଡ଼ାଙ୍କର ତ ଆଉ କିଛି ପାଇଟି ନାହିଁ, ଦରିଆଯାକ ବୁଲି ଡକାଇତି କରୁଛନ୍ତି, ଉତ୍ତରରେ ନ ପାଇଲେ ଦକ୍ଷିଣକୁ ଧାଡ଼ିଦେବେ ।

ବାବୁ ନବଘନ ଶ୍ୟାମସୁନ୍ଦର ରାଉତେ କହିଲେ—ଆପଣମାନେ ଟଣ୍ଡେଲ ମୁହଁରୁ ତ ଶୁଣିଲେ, ଚୋରଗୁଡ଼ାକ ଫିରିଙ୍ଗୀ ଜାତି—ତେବେ ଆସ, ଫିରିଙ୍ଗୀମାନଙ୍କ ସାଙ୍ଗରେ କାରବାର ବନ୍ଦ କରିବା । ଚୋର ଗୁଡ଼ାକ ତ ଏମାନଙ୍କ ଜାତିଭାଇ । କାରବାର ବନ୍ଦ ହେଲେ ଦେଶରୁ, ଦରିଆରୁ ସବୁ ଆଡ଼ୁ ଛାଡ଼ି ପଳାଇବେ ।

ବାବୁ ଚରଣ ଦାସେ କହିଲେ—ନାହିଁ, ନାହିଁ, ଏ କଥାଟା ମୋ ମନକୁ ପାଇଲା ନାହିଁ । ଟଣ୍ଡେଲ କଥାରୁ ଶୁଣିଲେ ନାହିଁ, ସେ ଯେ ଗଙ୍ଗାଇ-ନଈ, ରତ୍ନଦ୍ୱୀପରେ ଚେର ମାଡ଼ି ବସିଲେଣି, ସେ କି ଆଉ ଉଠୁଛନ୍ତି ? ରତ୍ନ ଦ୍ୱୀପଟା ଦରିଆ ମଝାମଝି ଘାଟି ଜାଗା, ଦରିଆଯାକରେ ତାର ଅଧିକାର । ଆଉ ଗୋଟାଏ କଥା, ଫିରିଙ୍ଗୀମାନଙ୍କୁ ତ ତଡ଼ି ଦେବେ, କାରବାର କରିବେ କାହା ସାଙ୍ଗରେ ? ସେମାନେ ଜାତିରେ ମ୍ଲେଚ୍ଛ ସିନା—ମଦ ମାଉଁସ ଖାନ୍ତି, ଯେତେ ହେଲେ ସେମାନେ ହେଲେ ଲକ୍ଷ୍ମୀପୁତ୍ର । ମୋଟା କାରବାର ରଗଡ଼ ଝଗଡ଼ା ନାହିଁ; କଥା ପଦେ ପଦକେ ସଉଦା । ଆହୁରି ବି ଗୋଟାଏ କଥା, ଦେଶରୁ ତଡ଼ି ଦେଲେ ସମସ୍ତେ ମିଳି ଦରିଆରେ ଡକାଏତି କରିବେ, ତେତେବେଳେ ଉପାୟ ?

ବାବୁ ରାମରାମ ପାଣ୍ଡେ କହିଲେ—ଭୁଲା କଥାଟାରେ ଏତେ ବକ୍‌ବକ୍ କାହିଁକି ? ଶୁଣିଲେ ନାହିଁ, ଡକାଏତମାନେ ଫିରିଙ୍ଗୀ ନୁହନ୍ତି, ଫାଟୁଆ ଗାଈ ଜାତି ।

ବାବୁ ପରମ ପରିଡ଼ା ଟିକିଏ ଖପା ହେଲାପରି କହିଲେ—ଆପଣ-ମାନେ ଭିତରର କଥା ସବୁ ନ ଜାଣି କାହିଁକି କଥା କହନ୍ତି ? ଆମ୍ଭକୁ ଅସଲ କଥା ଜଣା । ଫିରିଙ୍ଗୀ ଖଲାସୀମାନଙ୍କ ମୁହଁରୁ ଢେର ଥର ଶୁଣିଛୁ—ଏଇ ଯେ ଦରିଆ ଦେଖୁଛ, ଠିକ ପୂର୍ବଦିଗରେ ଆର କୂଳକୁ ଲାଗି ଗୋଟାଏ ଟାପୁ ଅଛି, ସେଇଟାର ନାମ ବିଲାଇତି । ସେଇଟା ଢେର ବାଟ । ବାଲେଶ୍ୱର ନଈ ମୁହାଣ ପାଖରୁ ଠିକ ପୂର୍ବମୁହାଁ ଜାହାଜ ଛାଡ଼ିଦେଲେ, ଦେଢ଼ ବରଷରେ ସେ

ଦେଶରେ ଜାହାଜ ପହୁଞ୍ଚିବ । ଆମ ଦେଶରେ ଯେମିତିକା ଛତିଶ ପାଟକ ଅଛନ୍ତି, ସେ ଦେଶରେ ସେହିପରି ଓଲନ୍ଦାଜ, ଡିଙ୍ଗେମାର, ଇଂରେଜ, ଫରାସୀ ନାନା ଅଲଗା ଅଲଗା ଜାତି ଅଛନ୍ତି । ଦେଖ ନାହାନ୍ତି, ଏଇ ବନ୍ଦରରେ ସେମାନଙ୍କ ଘର ଅଲଗା ଅଲଗା । ଫାଟୁଆଗୋଣ୍ଡମାନେ ବି ଫିରିଙ୍ଗୀ ସତ—ହରୁ ଚଣ୍ଡେଲ ମୁହଁରୁ ଶୁଣିଲେ ନାହିଁ, ସେହି ଫାଟୁଆ-ଗୋଣ୍ଡମାନେ ରବିବାର ଦିନ କିଛି କାମ ପାଇଟି କରନ୍ତି ନାହିଁ, ଗିର୍ଜାକୁ ଯାଇ ଠାକୁର ପୂଜା କରନ୍ତି । ସେମାନଙ୍କ ପୁରୋହିତମାନେ ବି ପାଲା ଗାଆଣିଆଙ୍କ ପରି କଳାକନା ଘାଗରା ପିନ୍ଧନ୍ତି, ଦିନଟାରେ ମହମବତୀ ଜାଳନ୍ତି, ଆଣ୍ଠେଇପଡ଼ି ପାଣି ଛିଞ୍ଚନ୍ତି ।

ବାବୁ ରାମରାମ ପାଳେ କହିଲେ, "ଯତ ପର ହୋ ! ଅଲଗା ଜାତି ନୁହନ୍ତି । ସେ ଦିନ ରାତିରେ ଫରାସୀ ସେଁନ୍ତିମି ଭୋଁ ସାହେବ ଡିଙ୍ଗେମାର ବଡ ସାହେବ ଘରେ ବସି ଖାଉଥିଲେ, ମୁଁ ଦେଖିଛି । ନିଶ୍ଚୟ ଏକା ଜାତି । ହୋପିମୁଣ୍ଡିଆ ଗୋଟାଏ ଜାତି ।"

ବାବୁ ରଘୁନାଥ ଦେ କହିଲେ, "ନାହିଁ ହୋ, ସେମାନେ ଅଲଗା ଅଲଗା ଜାତି । ଦେଖୁନାହଁ, ଗୋଦାମ ଘର—ଗଦି—ଜାହାଜ – କାରବାର ସବୁ ଅଲଗା । ଆଉ ଖାଇବା କଥା ଯାହା କହିଲେ, ବିଦେଶରେ କିଏ କାହାକୁ ଦେଖୁଛି ? ଆଉ ଯାହା କହ, ଇଂରେଜ ଫିରିଙ୍ଗୀ ହେଲେ କଣ ହେଲେ, ସେମାନେ ଏମାନଙ୍କ ମଧ୍ୟରେ ଜାତି ବ୍ରାହ୍ମଣ ହେବେ ପରା । ଦେଖୁ ନାହାନ୍ତି, ସମସ୍ତେ ବନ୍ଦରରେ ବଡ଼ ବଡ଼ କୋଠି ବନେଇ ରହିଛନ୍ତି । ଇଂରେଜ ଏମାନଙ୍କ ଭିତରକୁ ଆସିଲେ ନାହିଁ । ବଳରାମଗଡ଼ (୧) ମୁହାଣ କଡରେ ଉଠା ଦୋକାନ ପକାଇଛନ୍ତି । ଆଉ ଏମାନଙ୍କ ଦେହ ରଙ୍ଗ, ସେମାନଙ୍କ ଦେହ ଶେତଆ ।"

ବାବୁ ଚରଣ ଦାସ ପଚାରିଲେ, "ହୋଇ ହେ ଦେ ସାଆନ୍ତେ ! ଇଂରେଜ ଫିରିଙ୍ଗୀର ଦୁଇଖଣ୍ଡ ବଡ଼ ବଡ଼ ଜାହାଜ ଗବର୍ଣ୍ଣା ଗଦିରେ ବରଟେ ହେଲା ବନ୍ଧା ହୋଇ ପଡ଼ିଛି, ବିଲଇତ ଯାଉ ନାହିଁ କିଆଁ ? ସେ ଜାହାଜ ଦୁଇଖଣ୍ଡର ନାମ କଅଣଟି ? ହଁ—ହଁ, ଖଣ୍ଡିକର ନାମ ଡାହାଣୀ ମୁଣ୍ଡ (୨), ଆଉ ଖଣ୍ଡିକର ନାମ ନାଳୀ ।" (୩)

---

(୧) ନଦୀ ସମୁଦ୍ର ସଙ୍ଗମ ସ୍ଥାନରେ ଗୋଟାଏ ଜାଗାର ନାମ ।
(୨) Diamond, (୩) Lily.

ବାବୁ ରଘୁନାଥ ଦେ—ହୋ-ହୋ ! ସେ କଥା ଶୁଣି ନାହାନ୍ତି ପାରେ ? ବଙ୍ଗାଳୀ ଫିରିଙ୍ଗୀଗୁଡ଼ାକ ଆପଣା ଭିତରେ ବାଡ଼ଆବାଡେଇ ଲାଗିଛନ୍ତି । ସବୁ ଫିରିଙ୍ଗୀ ଏକପକ୍ଷ, ଆଉ ଇଂରେଜ ଫିରିଙ୍ଗୀ ଏକପକ୍ଷ । ଦରିଆରେ ଇଂରେଜ ଜାହାଜ ଦେଖିଲେ ବାଡେଇ ନେବେ ।

ଆଉ କେତେଟା ଜାହାଜ ଖଣ୍ଡ ବନ୍ଦରରେ ପଡ଼ ପଡ଼ ରହିବ ?

ବାବୁ ରଘୁନାଥ ଦେ—ଆଉ ଜାହାଜ ଯାଉଥିଲା, ତାଆଣୀମୁଣ୍ଡ ଏଇଟି ଗଡ଼ଲା ବୋଲି ଜାଣ । ମଣିଷ କାହାନ୍ତି ଯେ, ଜାହାଜ ବାହି ନେବେ ? କଥା କଣ କି, ସବୁ ଦେଶରେ ଖଲାସୀଗୁଡାକ ଶ୍ରେଷ୍ଠ ଜାତି, ଘର ମଦୁଆ ଜାହାଜ ତ ବନ୍ଧା ହୋଇ ପଡ଼ିଲା,ହାତରେ କାମ ପାଇଟି ନାହିଁ,ଲଗେଇଲେ ମଦପିଆ । କଳା ମରିଚ, ବାଖର, ଗୁଡ଼ଳ ଦେଇ ଏକ ରକମ ମଦ ତିଆରି କଲେ, ଦିନରାତି ତାକୁ ବସି ପିଇଲେ । କଳାମରିଚ ଆଉ ବାଖର ହେଲା ନିଆଁପରି ଗରମ । ସେଗୁଡ଼ାକ ହେଲେ ଶୀତଳ ଦେଶର ଲୋକ, ସହିବ କିଁଆ ? ଲମ୍ୱ ଲମ୍ୱ ଧଣ୍ଡ ପରି ଶୋଇଗଲେ । ଜାହାଜ ଚଳାଉଛି କିଏ ?

ପରମ ପରଜା—ସେଗୁଡ଼ାଙ୍କ ଉପରେ ଇଂରେଜ ଫିରିଙ୍ଗୀ ବି ଉପ୍ରି ମରି ରହିଛି, ଆମ୍ଭମାନଙ୍କୁ କଣ ରଖିବେ ? ଆସନ୍ତୁ, ଆଜି କତିରୁ ଖାଲି ଇଂରେଜମାନଙ୍କ ସାଙ୍ଗରେ ବଳରାମଗଡ଼ ଆଉ ସୂତାନୁଟି ହାଟରେ କାରବାର କରିବା ! ସେଗୁଡ଼ାଙ୍କ ସାଙ୍ଗରେ ଆଜିକତିରୁ କାରବାର ବନ୍ଦ ।

ବାବୁ ରଘୁନାଥ ଦେ—ଏଇ ଯେ ସୂତାନୁଟି ହାଟ କହୁଚ, ତାର ହାଲ ଜାଣନ୍ତି ? ସେ ଜାଗା ଅଡତଦାର କତିରୁ ସବୁ ହାଲ ବୁଝିଛି । ଇଂରେଜ ଫିରିଙ୍ଗୀ ଭିତରେ ଗୋଟାଏ ସାହେବ ଅଛି, ସେ ଲୋକଟି ବଡ ଧାର୍ମିକ । ମଦ ମାଉଁସ କିଛି ଖାଏ ନାହିଁ, ରୋଜ ରୋଜ ଗଙ୍ଗାସ୍ନାନ କରେ, କାଳିଘାଟରେ ପୂଜା ଦିଏ, ଖାଲି ଯଅ ଛତୁ ଆଉ ଚଣା ଖାଏ । ଦେଶ ଭିତରେ ତା ନାମଡ଼ାକ ଭାରି,ତାକୁ ଯବଚଣାଖିଆ ସାହେବ ବୋଲିଡ଼ାକନ୍ତି । ଏଇ ଯେ ସୂତାନୁଟି ହାଟ ଦେଖୁଛ, ଆଗେ ସେଇଠା ଘଞ୍ଚ ଜଙ୍ଗଲ ଥିଲା । ସେଇ ଯବଚଣାଖିଆ ସାହେବ ବଣ କାଟି ହାଟ ବସେଇଛି । ତାହାର କାରବାର ବଡ଼ ଠିକ୍—ଠେକଠୋକ । ଦେଶ ଲୋକେ ତାକୁ ଠାକୁର ପରି ମାନନ୍ତି । ଦେଶ ଭିତରୁ ଖୁବ୍ ଦୂରଦୂରାନ୍ତରୁ ମହାଜନ ଜମିଦାରମାନେ ଆସି

ସୂତାନୁଟିରେ ଘର ବନେଇଲେଣି, ଉଞ୍ଚା ଉଞ୍ଚା କୋଠାଘର ଭର୍ତ୍ତି ହୋଇ ଗଲାଣି । ସାହେବର ତେଲଙ୍ଗା ପାଇକମାନେ ହାଟରେ ପହରା,ଟେଣ୍ଟର ଚଷ୍କର ନାମ ନାହିଁ । ଆଉ ସେ ସାହେବ କଣ କରୁଛି କି, ହାଟର ଉତ୍ତର ପଟରେ ଘର ଗୋଟାଏ ନାଳ ଖୋଳୁଛି । ମରହଟ୍ଟା ପଶି ପାରିବ ନାହିଁ, ଆଉ ଡ଼ର କାହାକୁ ? ହାଟରେ ମାଲ ପଦାରେ ପଡ଼ିଥାଉ, କେହି ଅନାଇ ଦେବାକୁ ନାହିଁ ।

ବାବୁ ଜଗଦ୍ ବନ୍ଧୁ ମଲ୍ଲ କହିଲେ, "ତେବେ ଏତେ କଥାରେ ଲାଭ କଣ ? ଆସ ଆଜଠାରୁ ଆଉ ଫିରଙ୍ଗୀମାନଙ୍କ ସାଙ୍ଗରେ କାରବାର କରିବା ନାହିଁ—ଖାଲି ଇଂରେଜ ବଣିଆଙ୍କ ସାଙ୍ଗରେ ଲେଣ୍ ଦେଣ୍ । ସବୁ ଜାହାଜ ସୂତାନୁଟି ହାଟକୁ ପଠାଇବା ।"

ମଲ୍ଲ ବାବୁଙ୍କ କଥା ସମସ୍ତଙ୍କ ମନକୁ ଧେନଲା । ସମସ୍ତଙ୍କର ଏକ ମତ୍ପୂ । ହରିବୋଲ ଦେଇ ସଭା ଭାଙ୍ଗି ସମସ୍ତେ ଆପଣା ଆପଣା ଘରକୁ ଗଲେ ।



# ବଗଲା ବଗୁଲୀ

ବନ୍ଧଆ ସାହୁ ଭୂଷଣ୍ଡପୁର ଗାଁର ଚୌକିଆ । ଏତେ ବଡ଼ ଗାଁଟା, କଣ୍ଟ୍ରା ବୋଇଲେ ବନ୍ଧଆ ଏକୁଟିଆ । ଅଛବ ଲୋକଟା, ସେ କଣ ଭଲ ଲୋକଙ୍କ ଘର ଲଗାଲଗିରେ ଘର କରିବ ! ଗାଁ ମୁଣ୍ଡ ହୋଇ ମାଣ ଜମି ଛାଡ଼ ପଦା ଢିଅରେ ଗୋଟିଏ ପଲ୍ଲାଘର । ଜାତିରେ ତ କଣ୍ଟ୍ରା—ଚୌକିଆ ବାପୁଡ଼ା ବୋଲି ପୂଞ୍ଜୀ ନୁହେ । ହେଲେ, ଗାଁ ଲୋକେ ତାକୁ ମାନନ୍ତି । ଆଜି ସେ ଗାଁ ଚଉକିଆ ପରି ନୁହେଁ । ଶତାଏ ଉଞ୍ଚା ମୂଳବାଉଁଶ ଠେଙ୍ଗାଟାଏ କାନ୍ଧରେ ପକାଇ, "ଏ ଗ୍ରାମ ପଇତେ—ଜାଗତା, ଏ ନାଇକ ଘର—ହୁସିଅ।ର", ଏହିପରି ଡାକ ଡାକି ଦୁଆର ଦୁଆର ରାତସାରା ବୁଲୁଥିବ । ବନ୍ଧଆ ସାହୁ ଚୌକିଦାରୀ କଲାଦିନରୁ ଗାଁରେ କାହାର ଘର ପିଣ୍ଡାରୁ ପୋଇ ଓଳଟାଏ ବି ଚୋର ଯାଇ ନାହିଁ । କଥା କ'ଣ କି ମଫସଲ ଗାଁରେ ଚୋରମାନେ ଚୌକିଆ ଓର ନ ଧରିଲେ ଗାଁ ଭିତରେ ପଶିପାରନ୍ତି ନାହିଁ । ଫେର ତା' ବାଦ ବନ୍ଧଆ ଗୋଟାଏ ପଞ୍ଚହତା ମରଦ । ଠେଙ୍ଗାଟାଏ ଧରିଥିଲେ ଦଶଜଣ ଭେଣ୍ଡିଆ ପାଖ ପଶି ପାରିବେ ନାହିଁ । ଏଥିଲାଗି ଚୋରଯାକ ଭରସି ଭୂଷଣ୍ଡପୁର ଗାଁ' ମୁହାଁ ହୋଇପାରନ୍ତି ନାହିଁ ।

ବନ୍ଧଆଁର ବର୍ତ୍ତମାନ ମାଣେ ଦଗବାର ଜାଗିର । ତା' ବାଦ ଫସଲ ଅମଳ ବେଳେ ଗାଁର ସାନ ବଡ଼ ସମସ୍ତେ ଖଳା ମୁଣ୍ଡରେ ତାକୁ ଗୋଟାଏ ଗୋଟାଏ କଳେଇ ଦିଅନ୍ତି । ସାହପୁଅ ସବୁବେଳେ ମନ ଆନନ୍ଦରେ ଥାଏ, ସବୁବେଳେ ହରେକୃଷ୍ଣ ହରେକୃଷ୍ଣ ଭଜୁଥାଏ । ଥିଲା ନ ଥିଲାକୁ ତା'ର ଶୋଚନା ନାହିଁ । ଘରେ ଅଛି, ଖାଇଲା—ନାହିଁ ଉପାସ ରହିଲା । ଜୀବନଟା ଯାକ କାହାରିକୁ କିଛି ମାଗି ନାହିଁ, କାହାରି ଦୁଆରେ ଆଦୁଯ୍ୟ ହୋଇ ନାହିଁ । କିଛି ଦୁଃଖରେ ପଡ଼ିଲେ ହାତ ଯୋଡ଼ି ଉପରକୁ ଅନାଇ ଜଣାଏ, 'ହରି ତୋ ମରଜି ।'

ବୁଢ଼ୀଟି ମନ୍ଦିରରୁ ବନ୍ଦିଆ ପାଣ ଘଣ୍ଟି ସଞ୍ଜ ସ୍ନେହ ଖାଇଦେଇ ପୁଅକୁ ଧରି ବାହାରିଯାଏ । ଭାଗବତ ଘର ଆଗ ପିଣ୍ଡାତଳେ ଖଣ୍ଡେ ଛିଣ୍ଡା ଟାଟ ପାରିଦେଇ ପୁଅଟିକୁ ଶୋଇଦିଏ । ଭାଗବତ ଘରେ ପୁରାଣ ଗାଦି ବସେ । ଗାଁର ପୁରୋହିତ ବିଷ୍ଣୁ ପଣ୍ଡାଏ ପୁରାଣପଣ୍ଡା । ତାଙ୍କର ସେଥିକି କିଛି ବର୍ତ୍ତନ ନାହିଁ । ପୁରାଣ ବଡ଼ା ଦିନ ଗାଁର ସାନ ବଡ଼ ସମସ୍ତଙ୍କୁ ସଙ୍ଗୁଳା ହୁଏ । ପୁରାଣ ଶୁଣ ନ ଶୁଣ, ଆପଣା ମଗଦୂର ଭରି କିଛି କିଛି ଦେବାକୁ ପଡ଼ିବ । ପଇସା ନାହିଁ ତ, କେହି ଦି'ମାଣ ଧାନ କାନିରେ ବାନ୍ଧିଆଣି ଢ଼ାଳି ଦେଇଗଲା । ସବୁଦିନେ ପୁରାଣ ହୁଏ । ଖାଲି ଉଆଁସ, ପୁନେଇ; ସଂକ୍ରାନ୍ତି, ଗୁରୁବାର ବନ୍ଦ । ପଣ୍ଡାଏ ଉଖୁଡ଼ା ପୁଞ୍ଜାଏ ନୋହିଲେ ଗୁଡ଼ ଟୋପାଏ ଭୋଗ ଦେଇ ହାତତାଳି ମାରି ଚାଲିଯାନ୍ତି । ସେ ସବୁ ଦିନରେ ଗାଁ'ର ମୁଖିଆ, ମୁଖିଆ ଲୋକ ଅଧାରାତିଯାଏ ବସି ଗାଁର ଭଲ ମନ୍ଦ, ହାରିଗୁହାରି, କଥା ବୁଝାବୁଝି କରନ୍ତି ।

ଗାଁ'ର ବୁଢ଼ା ଭଲିଆ ଲୋକ ରୋଜ ପୁରାଣ ଶୁଣିବାକୁ ଆସନ୍ତି । ଦେହ ବାଧିକା ଅବା ହାତରେ କିଛି ପାଇଟି ଥିଲେ; ଦିନେ ଅଧେ ଆସି-ପାରନ୍ତି ନାହିଁ । ମାନ ଭେଣ୍ଡିଆଟି ଦିନରୁ ଆଜିଯାଏ ଚାଳିଶ ପଚିଶ ବର୍ଷ ମଧ୍ୟରେ ବନ୍ଦିଆ ପାଣ ହାଜର ହେବାରେ ଦିନେ ବି ଛୁଟେଣ ନାହିଁ, ବାଧିକ ପଡ଼ିଲେ କୁନ୍ଥେଇ କୁନ୍ଥେଇ ବେଳେ ଆସିବ । ପୁରାଣ ଆରମ୍ଭ 'ଶ୍ରୀ ଶୁକଉବାଚ' କଡ଼ିରୁ ଶେଷ 'ଶ୍ରୀମାସ୍ୟାପି' ଯାଏ ହାତଯୋଡ଼ି ବସି ମନଦେଇ ଶୁଣୁଥାଏ । ପୁରାଣ ପାଠ ବେଳେ କୌଣସି ସ୍ଥାନରେ ଅର୍ଥରୁ କିଛି ଅଖଞ୍ଜି ହେଲେ ସମସ୍ତେ ଅନାଇ କହନ୍ତି, ପାଣପୁଅ "ଏ ଜାଗାରେ ପାଠ କ'ଣ ହେଲା ?" ପାଣ ହାତଯୋଡ଼ି 'ଆଜ୍ଞା ସାଆନ୍ତମାନେ' କହି ଗୀତର ଏମନ୍ତ ସୁନ୍ଦର ଅର୍ଥ କରିଦିଏ ଯେ, ସମସ୍ତଙ୍କ ମନ ଖୁସି । ପାଣକୁ ଭାଗବତର ଢ଼େର ଜାଗା ପେଟେ । ଅଧାକୁ ଅଧା ପାଠ ମୁହେଁ ମୁହେଁ କହିଯିବ । କଥା କହିବାବେଳେ ଭାଗବତରୁ ଢ଼େର ଢ଼େର ପଦ ଦାଙ୍କି ଦେଇ କହେ । ସାଆନ୍ତମାନେ ତାକୁ ପ୍ରଶଂସା କଲେ, ଦୁଇ ହାତରେ ଧୀରେ ଧୀରେ ଗାଲରେ ଚାପୁଡ଼ା ମାରିହୋଇ କହେ, "ଆଜ୍ଞା ସାଆନ୍ତେ, ମୁଁ କଣ୍ଡରା ବାପୁଡ଼ା କ'ଣ ଜାଣେ, ସାଆନ୍ତମାନଙ୍କ ଚରଣରେଣୁ ସେବାକରି ଯା' ଦି'ପଦ ଶିଖିଛି ।"

ବନ୍ଦିଆ ପାଣର ପୁଅ ସପ୍ନାର ବାହା ଲାଗି ଢ଼େର ଢ଼େର ଜାଗାରୁ କନ୍ୟାର ବାଉନ ଆସିଲାଣି । ଏଡ଼େ ବଡ଼ ଗାଁ'ର ଚୌକିଆ, ତା' ପୁଅଲାଗି

କ'ଣ କନ୍ୟାର ଅଭାବ ? ସପନା ପିଲାଟା ଯିମିତି ଦେଖିବାକୁ ଢଉଲ୍‌ଢାଉଲ ଗୁଣ ବି ସେମିତି କାମ ପାଇଟିକୁ ରାଜୁ । ବାପାକୁ ଖୁବ୍ ମାନେ, ବାପା କଥା ତଳେ ପଡ଼ିବ ନାହିଁ ! ବାପ ବାଧିକା ପଡ଼ିଲେ ଦିନ ରାତି ପାଖରେ ଜଗିବସି ସେବାରେ ଲାଗିଥିବ । ମଙ୍ଗମପୁର ଚୌକିଆ ଦଣ୍ଡିଆ ପାଣ୍ଡ ଝିଅ ଚେମୀକୁ ଦେଖି ବୁଢ଼ାର ମନ ମାନିଗଲା । ତାହାର ସାଙ୍ଗରେ ସପ୍ନାକୁ ବାହା କରିଦବା କଥା ଠିକ୍ କଲା । ଯେମିତି ହେଉ, ଏଇ ବର୍ଷ ବାହା କଲେ ବନେ । ଉଛୁଣି ପୁଅର ସତରବର୍ଷ ଚୁଲିଛି, ଆଏନ୍ଧାକୁ ଯୋଡ଼ା ବୟସ ପଶିବ, ବାହା ହେବ ନାହିଁ । ବାହା କରାଇବ—ହଁ—ବୋଇଲା, ରଙ୍କ ତିରିଶା । ଯେତେ ଟାଣିଟୁଣି ଖରଚ କର, ତିରିଶ ଟଙ୍କାରୁ ଊଣା ନୁହେଁ । ଜାତି ଭାଇମାନେ କ'ଣ ଛାଡ଼ିବେ ? ଏତେ ବଡ଼ ଚାକିରିଟାରେ ଅଛି, ନାମ ଡ଼ାକ, ନାହିଁ ବୋଇଲେ କିଏ ଶୁଣେ ?ଆଉ ନକୁଳ ଦି ବେଳ ତ ଜାଣି ଗୋସେଇଁ ମାନଙ୍କୁ ମୁଖ ଧଉତ କରାଇବ । ହାତରେ ନାହିଁ ପଇସାଏ,ଯାହା କରିବେ, ଯାହା ଦେବେ ହରି । ଢେ଼ର ବେଳ ଯାଏ ହାତଯୋଡ଼ି ପ୍ରଭୁଙ୍କୁ ଡ଼ାକିଲା, "ପ୍ରଭୁ ! ତୁମ ଇଚ୍ଛା ହେଲେ ପୁଅଟି ଦି' ହାତକୁ ଚାରି ହାତ ହେବ ।"

ଦିନେ ରାତିରେ ପୁରାଣପାଠ ସରିଲା ବାଦ ଗାଁ'ର ମୁଖଣ୍ଡ ମୁଖଣ୍ଡ ସାଆନ୍ତ ମାନେ ବସିଥାନ୍ତି, ବନ୍ଧୁଆ ପାଣ୍ଡ ହାତଯୋଡ଼ି ଜଣାଇଲା, "ଆଜ୍ଞା, ସାଆନ୍ତ ମାନଙ୍କ ହୁକୁମ ହେଲେ ପଦେ ଗୁହାରି ଜଣାଇବି । ଆଜ୍ଞା, ଆପଣ-ମାନଙ୍କ ଚରଣ ଧୂଳି ଲାଗି ପୁଅଟି ପାରିଲାଣି । କନ୍ୟାଟିଏ ଠିକ୍ କରିଛି, ଆଜ୍ଞା ହେଲେ ହାତଛନ୍ଦା କରାଇଦେବି ।"

ସବୁ ସାଆନ୍ତ ବସି ମୁହଁ ଚାହାଁଚାହିଁ ହେଉଛନ୍ତି, କାହାରି ପାଟି ଫିଟୁ ନାହିଁ । ଜମିଦାର ବଳରାମ ନାୟକେ ଗୋଟାଏ କାମ ବାହାନା କରି ବନ୍ଧୁଆ ପାଣ୍ଡକୁ ଆଣି ଆଡ଼େଇ ପଠାଇ ଦେଲେ । ତହିଁ ବାଦ୍ ସମସ୍ତଙ୍କ ମୁହଁକୁ ଚାହିଁ କହିଲେ, "ଦେଖନ୍ତୁ, ଗ୍ରାମର ସମସ୍ତ ମୁରବି ଲୋକେ ତ ଅଛନ୍ତି । ବନ୍ଧୁଆ ଊଣା ପୁରା ପଚିଶ ବର୍ଷ ହେଲା ଗାଁ'ଟାକୁ ଆଗୁଳିଛି । ତା ବାହାଦୌଲତରେ ଚୋରି ଚପାଟି କିଛି ଶୁଣା ନାହିଁ । କେବେ ସେ କିଛି ମାଗି ନାହିଁ । ମାଗିବା ଲୋକ ନୁହେଁ । ଲୋକଟି ଯେମିତି ସତ୍ୟବାଦୀ, ସେମିତି ଧାର୍ମିକ । ତା' ହାତରେ ପଇସାଏ ଥିବ ନାହିଁ, ଜଣା । ଆସନ୍ତୁ ଆମ୍ଭେମାନେ ତା' ପୁଅକୁ ବାହା କରେଇ ଦେବା ।"

ସମସ୍ତେ ଏକାବେଳକେ କହି ପକାଇଲେ, "ଆଜ୍ଞା ! ଆଜ୍ଞା ! ସାଆନ୍ତ ଯାହା ଆଜ୍ଞା କଲେ ଠିକ୍ କଥା । ଆମ୍ଭେମାନେ ମନ ନଦେଲେ ସେ କମିତି ଚଳିବ ?"

ଜମିଦାରଙ୍କ ଆଜ୍ଞାରେ ଅବଧାନେ ରଙ୍ଗାଧର ମହାନ୍ତିଏ ଧାଇଁଯାଇ ଲେଖନପତ୍ର ଘେନିଆସିଲେ । ବାହାଘରକୁ ଯାହା ଲୋଡ଼ା—ଚାଉଳ, ଗୁଡ଼ଜଳ, ତେଲ, ଲୁଣ, ସୋରିଷ, ଝୁଲପତ୍ର ଖଣ୍ଡିକ ସୁଦ୍ଧା ତାଲିକା ହେଲା । ପୁରୋହିତ କଣ୍ଠରା ବୈଷ୍ଣବ, ତା'ପାଇଁ ମୂର୍ତ୍ତିଏଲୁଗା, ଗୁରଅଣା ଦକ୍ଷିଣା ସବୁ ତାଲିକାରେ ବସିଲା । ମଣିଷ ଶକ୍ତି ସବୁ ଗାଁ'ଯାକ ଭେଦା ହୋଇଗଲା ।

ଆଜ ଅଭଡ଼ା ମଙ୍ଗନ । ବାହା ଆଉ ଦୁଇଦିନ ଅଛି । ସକାଳ ଦିନ ପହରକ ସମୟରେ ଜମିଦାରଙ୍କ ଦୁଆରୁ ଭାର ଯାଇ ପାତ୍ର ଦୁଆରେ ଜମା ହେଲା । ଜମିଦାର ଗାଁରସମସ୍ତଙ୍କଘରୁ ଲୁଣ୍ଠେଇ ଘରେ ଠୁଳକରି ରଖିଥିଲେ । ପାତ୍ରର ତ ସାତ-ପାଞ୍ଚ ଗୋଟିଏ ପଲଘର, ପଦାର୍ଥ ସବୁ ରଖୁଛି କାହିଁ ? ଦୂରଦୂରାନ୍ତରରୁ କୁଣିଆ କୁଟୁମ୍ବ ଆସି ରହିବାଲାଗି ବାପପୁଅ ଲାଗି ଖଜୁରୀ ପିଣ୍ଡାରେ କେତେ ବଖରା ଗୁମୁଡ଼ିଆ କରି ପକାଇଥିଲେ । ସେଥିରୁ ଗୋଟାଏ ଘରେ ସବୁଜିନିଷ ରଖିଦେଲେ । କାଲି ବିବାହ । ମଙ୍ଗନ ଦିନଠୁ ସବୁ କୁଣିଆ ପହଞ୍ଚିଗଲେ । ଖିଆ ଲାଗିଲା । ସେଦିନ କୁଣିଆ ଭିତରୁ ଚାରି ଜଣ ରାନ୍ଧୁଣୀ ପରଷୁଣୀ ବାହାରିପଡ଼ିଲେ । ବୁଢ଼ାପାତ୍ର ପାନ କଣ୍ଢରୁ ବଢ଼ଯାଏ ସବୁ ଜାତିପୁଅଙ୍କ ହାତଧରି, ଗୋଡ଼ଧରି କହୁଥାଏ, "ସାଆନ୍ତମାନେ ! ଭୋଗସିଆଁମାନେ ! ପଞ୍ଚୁ ଠାକୁରମାନେ ! ଏକାମ ଆପଣମାନଙ୍କର, ପୁଅ ଆପଣମାନଙ୍କର, କାମ ତୁଲେଇ ନେଉନ୍ତୁ !" ସତକୁ ସତ, ସମସ୍ତେ କାମ ତୁଲେଇନେଲେ, ବାହା ହୋଇଗଲା । ଜାତିପୁଅମାନେ ଖୁସି ହୋଇ ବିଦା ହୋଇଗଲେ । ଯିବାବେଳେ ବାଟରେ କୁହାକୁହି ହୋଇ ଯାଉଥାନ୍ତି, "ଜାତି ଭିତରେ ଏତେ କାର୍ଯ୍ୟଟା କେହି କରିନାହିଁ । ସବୁ ଜାତିପୁଅଙ୍କୁ କିଏ ବରଣିଥାଏ ? ଖୁଆଇ ପିଆଇ ଘୋର କରିଦେଲା । ତାଟିଆକୁ ତାଟିଆ ବରି ଡ଼ାଲି ବାଟୁଆ ପରି ବଡ଼ ବଡ଼ ପୁଞ୍ଜାଏ ଗାରଡ଼ି ବାନ୍ଧିଦେଲା, ଗୁଡ଼ମାଠିଆ ତାଡ଼ି, କେତେ ପିଇବ ପିଅ । ଧନ୍ୟ ଧନ୍ୟ ସିମିତିକା ସାଆନ୍ତମାନଙ୍କୁ ଫଟିଛି ଏଥର ।"

ବହୂଟି ଘରକୁ ଆସିଲା । ଦେଖିବାକୁ ବେଶ୍ ଉଜ୍ଜଳଡ଼ାଉଳ, କିଏ କହିବ କଣ୍ଠରା ଘରର ଝିଅ ? କରଣ ଖଣ୍ଡାୟତ ଘରର ଝିଅ ପରି ଦିଶେ ।

ଗୁଣ ବି ସିମିତ, ତା’ ହାତରନ୍ଧା ମଦରଙ୍ଗା ଶାଗ ଖରଡ଼ା, ଚେଙ୍ଗମାଛ ଅଣ, କଙ୍କଡ଼ା ସିଝା ଯିଏ ଖାଇଛି, ସେ ଭୁଲି ପାରିବ ନାହିଁ । ଏକଥାଗୁଡ଼ାକ ଏକା ବୁଢ଼ା ହୋଇ ମୁହଁ ଖୋଲି କହୁନାହିଁ । ଘସିଆଡ଼ିଓ, ଗୁଣ୍ଡି କାଠ ଗୋଟେଇବା, ଗାଈ ଭିତରୁ ଗୋବର ଆଣିବା, ସବୁ ଗୁଣରେ ପୂରା । ସଞ୍ଜହେଲେ ବୁଢ଼ା ଗାଁରୁ ବୁଲି ଆସିଲେ ବହୂ ଟେକି ପାଣିରେ ଗୋଡ଼ ଧୋଇଦିଏ । ସାଙ୍ଗେ ସାଙ୍ଗେ ତିନ ପୁରୁଷର ବାସନ ଭଙ୍ଗା ପଥୁରିରେ ଭାତ, ରୁକୁଣ୍ଡା ଶାଗ ଖରଡ଼ା, କଙ୍କଡ଼ା ପୋଡ଼ା, ଚେଙ୍ଗା କୁଟୁଁଷି ଅଣ, ତିନ ତିଅଣ କରି ପରଷିଦିଏ । ବୁଢ଼ା ଏତେ ତିଅଣ କେବେ ଖାଉଥିଲା ? ଚେନ୍ତୁଳ ଫୁଟେ ଲୁଣ ଟିକକୁ ଭାତ ନଅଣ୍ଟ । ବହୂର ଏସବୁ ଗୁଣ ଦେଖି ବୁଢ଼ା ଦିନେ ନେଉଳାରେ ବସି ଢେ଼ର ‘ହାୟ ! ହାୟ’ କରି କାନ୍ଦିଲା । ସେତେ ଭାଗ୍ୟଟା — ହାନକପାଳୀ ବୁଢ଼ୀ ଦେଖି ପାରିଲା ନାହିଁ ।

ହଉ ବର୍ଷ ଛ ମାସ ବାଦ । ଦିନ ପହରରେ ହେଲାଣି, ବୁଢ଼ା ବିଛଣାରୁ ଉଠିନାହିଁ । ସପ୍ନା ପଚାରିଲା, “କଲେ ବାପା, ଏତେବେଳଯାଏ ଶୋଇଛୁ ?” ବୁଢ଼ା ପୁଅ ବହୂଙ୍କୁ ପାଖରେ ବସାଇ କହିଲା, “ଆରେ ସପ୍ନି, ମୋ ସାଙ୍ଗରେ ଯାଇ ପିଲାଦିନୁ ପୁରାଣ ଶୁଣିଛୁ; ଢେ଼ର କଥା ମୁଁ ବି ଶିଖେଇଛି, ମନରେ ରଖିବୁ—

ଚୋରି ନାଗ ଖୁଣି—ନ କର ଯହିଁ ଯା ପୁଣି ।
ଲୋଭ ନ କରିବୁ ପର ଧନେ—
ମିଛ ନ କହିବୁ କଦାଚନେ ।

ବହୂ ଲୋ, ଏହି ସପ୍ନି ହେଲା ତୋ ଖାଉନ୍ଦ—ତୋ ଠାକୁର ଦେବତା —ଯା କଥା ଏଡ଼ିବୁ ନାହିଁ । ମୋ ଦେହଟା କମିତିକା ଦେଖୁଛି, ଆଉ ବଞ୍ଚିବି ନାହିଁ ।”

ପୁଅ ବହୂ ଦୁହେଁ ଢେ଼ର କାନ୍ଦିଲେ । ଚାରି ପାଞ୍ଚ ଦିନ ଖିଆ ଶୁଆ ଛାଡ଼ି ବୁଢ଼ାର ଢେ଼ର ସେବା କଲେ । ବଡ଼ ବୁଢ଼ା ହୋଇଥିଲା, ଦିନ ଛଅଟା ଜରରେ ‘ହରି ହରି’ କହି ଚାଲିଗଲା । ପୁଅ ବହୂ ଢେ଼ର କାନ୍ଦିଲେ । ଗାଁ ଲୋକେ ‘ହାୟ ହାୟ !’ କହିଲେ, ମାତ କୁଳରେ ଇମିତିକା ସତ୍ୟବନ୍ତ ଧାର୍ମିକ ଦେଖା ନାହିଁ ।

ବୁଢ଼ାର ଶୁଦ୍ଧିବାଧ ଘଟିଲାଣି । ଦିନେ ସପ୍ନା ରେମୀ ବସି ବିଗ୍ଭର କଲେ—

ସପ୍ନା—ହଇ ଲୋ ବୋଉ ! ମୁଁ ଗ୍ଭକିରି ଇସ୍ତଫା ଦେବି । ତତେ ଏକୁଟିଆ ଘରେ ପକାଇ ରାତିରେ କମିତି କରି ଗାଁ ବୁଲିଯିବି ?

ସପ୍ନା ଯା କହେ, ସବୁ କଥାରେ ରେମୀର 'ହଁ' । ହେଲେ ଗ୍ଭକିରି ଗ୍ଭଡ଼ି ଦେବାଟା ତା ମନକୁ ମାନିଲା ନାହିଁ । କହିଲା, "ଏ ଖାଉନ୍ଦ ! ତମେ ତ ଗ୍ଭକିରି ଗ୍ଭଡ଼ିବ, କମିତି ଖାଇବା ପିନ୍ଧିବା ?"

ସପ୍ନା—ମୁଲକରେ ଏତେ ବିଲ—ଗାଁରେ ଏତେ ପୋଖରୀ ଗଡ଼ିଆ—ଘିଅ ଲୁଣ କ'ଣ ଉଣା ହେବ ?

ରେମୀ—ତମ ମନକୁ ଯା ଲାଗେ, କର ।

ରାତିରେ ଗାଁର ସାଆନ୍ତମାନେ ଭାଗବତ ଘରେ ବସିଛନ୍ତି, ସପ୍ନା ବେକରେ ଗାମୁଗ୍ଭ ଖଣ୍ଡି ପଟକା ପକାଇ ହାତ ଯୋଡ଼ି କହିଲା, "ଆଜ୍ଞା ସାଆନ୍ତମାନେ ! ମୋ ସାତ ପୁରୁଷ ଆପଣମାନଙ୍କ ଚରଣରେଣୁ ଗୋଲାମ—ଚରଣରେଣୁ ନୁଣ ଖାଇଲେ—ମୁଁ ଏଣିକି ଗ୍ଭକିରି କରିପାରିବି ନାହିଁ । ଆପଣମାନଙ୍କ ଚରଣରେଣୁରେ ଇସ୍ତଫା ଦେଲି ।" ସାଆନ୍ତମାନେ ଆପଣା ଆପଣା ମଧ୍ୟରେ ଢେର ବେଳଯାଏ ବିଗ୍ଭର କଲେ, ଶେଷରେ ଜମିଦାର ବଳରାମ ନାୟକେ କହିଲେ, "ନାହିଁ ରେ, ତୋ ଇସ୍ତଫା ନିଆଯିବ ନାହିଁ । ଯିମିତି ଚୌକିଆ ଥିଲୁ, ସେମିତି ଥିବୁ । ହେତା ହଳା ସବୁ ପାଇବୁ । ଗାଁ ବୁଲି ନ ଆସିବୁ ପଛକେ ।"

ସପ୍ନା ଆସି ବହୂକୁ ସବୁ କଥା କହିଲା । ରେମୀ ମନ ତ ଭାରି ଖୁସି, "ଏ ଖାଉନ୍ଦ ! ଭଲ କଲ, ଗ୍ଭକିରି ଥାଉ, ମୁଁ ଇମିତି ଧ୍ୟାନ ହେଲି—ଡରି ଗଲି ବଡ଼ ହେବ ଡରିବ ନାହିଁ—ତମେ ଗାଁ ବୁଲି ଯିବ, ମୁଁ ଘରରେ ଶୋଇଛି, ଡର ମାଡ଼ିଲା, ପାଟି କଲି, ଧାଇଁ ଆସିଲ । ବାଘ ନା ଭାଲୁ, କାହିଁ ଡରିବି ? ମୋ ମାଆ କହିଲା—

'ଡ଼ର କାହାକୁ ଭୟ କାହାକୁ,
ଠାକୁରେ ଅଛନ୍ତି ଗ୍ଭର ବାହାକୁ ।'

ହଁ ଖାଉନ୍ଦ ! ଆମ ଗାଁରେ ବୁଢ଼ୀ ମଙ୍ଗଳା ଠାକୁରାଣୀ ଅଛନ୍ତି, ସେ ମଣିଷ ଦୁଃଖ ଶୁଣନ୍ତି । ତମେ ଠାକୁର ହରି ହରି କୁହ, ବୁଢ଼ା ଶଶୁରେ ସବୁଦିନେ କହୁଥିଲେ, ହରି କିଏ ? ଆଚ୍ଛା, ଗାଁରେ ବାଡ଼ି ପଡ଼ିଲେ ତାଙ୍କୁ ପୂଜା ଦେଲେ ଯୋଟମା ପଳେଇବ ନା ?"

ସପ୍ନା—ନାହିଁ ଲୋ ବୋଉ—ହରି ଯେ ବଡ଼ ଠାକୁର, ସେ ଖାଇବାକୁ ପିଇବାକୁ ସବୁ ଦେଉଛନ୍ତି, ଆମର ସବୁ କାମ ଦେଖୁଛନ୍ତି, ମନ କଥା ଜାଣୁଛନ୍ତି । ଆମେ ଭଲ କାମ କରିବା, ତାଙ୍କୁ ଭଜିବା, ସେ ସୁଖ ଦେବେ । ମନ୍ଦ କାମ କଲେ, ତାଙ୍କୁ ଅମାନ୍ୟ ହେଲେ, ସେ ଦୁଃଖ ଦେବେ ।

ଟେମୀ—ସବୁକଥା ତ ହରି ଦେଖିବ, ଅଲିଆ କାମ କଲେ ଦୁଃଖ ହେବ, ବାପ ଲୋ ! ମୁଁ ସିମିତି କାମ କରିବି ନାହିଁ, ସବୁବେଳେ ତମ ହରି ହରିଙ୍କୁ ଡାକିବି । ଏ ଖାଉନ୍ଦ ! ମତେ ଭଲ ପାଇଟି ଶିଖେଇ ଦିଅ । ମା କହୁଛି, ତମ କଥା ମାନିବି—ତେମେ ଯା କହିବ, ସବୁ ଶୁଣିବି ।

ଗେରସ୍ତ ଭାରିଯା ଦୁଇଟି ପ୍ରାଣୀ ସବୁବେଳେ ଏକ ସାଙ୍ଗରେ ଥାନ୍ତି, ଗୁଡ଼ବାଡ଼ ଥାଏ ନାହିଁ, ଜଣକୁ ନ ପଚାରି ଆଉ ଜଣକ କିଛି ପାଇଟି କରେ ନାହିଁ । ଜଣକ ମନରେ ଦେହରେ ଦୁଃଖ ହେଲେ ଆଉ ଜଣକ କାନ୍ଦିପକାଏ । ସପ୍ନା ସାଆନ୍ତ ଘର ପାଇଟିକୁ ଗଲେ ଟେମୀ ଟୋକେଇଟିଏ କାଖେଇ ପଛେ ପଛେ ଯାଏ । ସପ୍ନା ବିଲରେ କାମ କରୁଥିବା ବେଳେ ଟେମୀ ଘଷି ସାଉଣ୍ଟେ, ହିଡ଼ଚଳୁ ପିତାଶାଗ, ମଦରଙ୍ଗା ଶାଗ ତୋଳେ, ଗାଡରୁ କଙ୍କଡ଼ା ଧରେ ।

ସପ୍ନା ଏକୁଟିଆ ଅଲଗା ପାଇଟି କରେ, ପାଞ୍ଚଜଣ ମୂଲିଆଙ୍କ ସାଙ୍ଗରେ ଥାଏ ନାହିଁ । କେହି ଦୁଷ୍ଟ ଲୋକ ଟାପରା କରି କଥା ପଡେ କହିଦେବ ପରା ! ଆଉ ଦୁଇଜଣ ମନ ଫିଟେଇ କଥା ଭାଷା ହୋଇପାରିବେ ନାହିଁ ।

ସପ୍ନା ପାଞ୍ଚ ମାଣ ଧାନ ମୂଲ ପାଏ । ବୁଢ଼ା ଅମଳରୁ ଘରେ ଗୋଟାଏ ଭଙ୍ଗା ମାଣ ଅଛି, ଟେମୀ ମାପିପକାଏ । ଆଗେ ମାଣେ ମାପି ବୁଢ଼ା ଅମଳର ଗୋଟାଏ ଭଙ୍ଗାମୁଣ୍ଡି ମାଠିଆରେ ପୂରାଇ ରଖିଦିଏ । "ଏ ଖାଉନ୍ଦ ! ଦେହ ଅଛି, ପା ଅଛି, ଘରେ ବସି ଖାଇବା ।" ମାଣେ ଧାନ ଦେଇ ତେଲ ପାହୁଲାକର, ଲୁଣ ପାହୁଲାକର, ଧୂଆଁପତର ଅଧପାହୁଲାଏ, ହଳଦୀ ଅଧପାହୁଲାଏ ହିସାବ କରି ଦେଇ ଶ୍ୟାମ ସାହୁ ତେଲି ମହାଜନ

ଦୋକାନକୁ ସପ୍ନାକୁ ପଠାଇଦିଏ । ଆଉ ଦିନମାଣ ଧାନ ହାତ ପାହାରଣାରେ କୁଟିପକାଏ । ଗୁଡ଼ଳ ବାହାର କରି ନେଇ ତସୁଗୁଡ଼ିକ ଗୋଟାଏ ଭଙ୍ଗା ଟୋକେଇରେ ଜମାକରି ରଖିଥାଏ, ଦୁଇ ଗୁଟିଦିନ ବାଦ ମେଲି ତସୁ କୁଟି ସେଥିରୁ କୁଣ୍ଡା କାଢ଼ିନିଏ । ମୁଠାଏ ଗୁଡ଼ଳ ମକାଇ ସେ କୁଣ୍ଡା ମିଶାଇ ପିଠଉ ବାଟି ଦେଇ ଗୋଟାଏ ପୋଡ଼ପିଠା କରିଦିଏ । ତସୁରେ ଗୋବର ଲଗାଇ ଘଷି ପାରେ । ସପ୍ନା କହେ, "ଟେମୀ ସବୁ ଗୁଣରେ ଫଟିକରୁ । ତା ପରି ଗୁଡ଼ଳ କୁଟିବ କିଏ ?"

ସପ୍ନା ଦୋକାନରୁ ବାହୁଡ଼ିବାବେଳକୁ ଟେମୀ ଭାତ ରାନ୍ଧି ରଖିଥାଏ । ଦୋକାନ ସଉଦା ଭଲ କରି ଦେଖି ସାଇତି ରଖେ । ତାହା ବାଦ ଟୋପାଏ ତେଲ ପକାଇ ଶାଗଟା ଖରଡ଼ି ଦିଏ, କଙ୍କଡ଼ା ଛେଚି ଦେଇ ଟୋପାଏ ତେଲ ଲୁଣ ଗୋଳାଇ ଦିଏ, ମାଛ ଥିଲେ ଟୋପାଏ ତେଲ ପକାଇ ଅଣ କରିଦିଏ । ବୁଢ଼ା ଭଙ୍ଗା ପଥୁରିରେ ସପ୍ନାକୁ ଭାତ ପରଷି ଦେଇ ପାଖରେ ବସେ । ଗିଣ ନିମୁମ ଦେଇ ବଳେଇ ବଳେଇ ଦୁଇଗୁଣ୍ଡା ଅଧିକ ଖୁଆଏ । ଟେମୀ ବଡ଼ ଘରଣୀ । ଝୋଟ ଅମଳ ବେଳେ ମାଆନ୍ତମାନଙ୍କ ଦୁଆରୁ ନଳଟା କାଠି ଆଣି ବଡ଼ାବାନ୍ଧି ରଖିଛି, ଖାଉନ୍ଦ ଭାତ ଖାଇବା ବେଳେ ଗୋଟାଏ କାଠି ଜାଳି ଆଲୁଅ ଦେଖାଏ । ସପ୍ନାର ଖିଆ ହୋଇଗଲେ ସେ ଅଇଁଠା-ପଥୁରିରେ ଆପଣା ଭାତ ବାଢ଼ି ଖାଏ । ଭଲମନ୍ଦ ଘରକୁ ଯେ ପଦାର୍ଥ ଆସୁ, ସପ୍ନା ଆଗେ ନ ଖାଇଲେ ଟେମୀ ଖାଇବ ନାହିଁ । ଦି ଜଣଙ୍କ ଖିଆପିଆ ହୋଇଗଲେ ବାକି ଭାତଗୁଡ଼ିକ ପଖାଳି ତହିଁ ଆରଦିନକୁ ରଖିଦିଏ । ଓଳିଏ ରୋଷେଇ, ଦୁଇ ଓଳିକୁ ଜାଳ କାହିଁ ? ଆହୁରି ଗୋଟାଏ କଥା, ସକାଳ ଓଳି ପାଇକିରୁ ଆସିବାକୁ ଦିନ ଦି ହେବ, ସେତେବେଳେ କିଏ ରନ୍ଧାକୁ ତର ସହିବ ? ବର୍ଷା ଦିନେ ଜାଳ ମିଳିବ ନାହିଁ ବୋଲି ଖରାଦିନେ ଘଷି ପାରି ଓଳି ପଛାଡ଼େରେ ଠାଙ୍କି ରଖିଦେଇଛି ।

ସପ୍ନା ଟେମୀ ଦୁଇଟି ପ୍ରାଣୀ ଖୁବ୍ ମନ ଆନନ୍ଦରେ ଅଛନ୍ତି । ସାହୁର ଦେଣା ନାହିଁ କି ରଜାର ଖଜଣା ନାହିଁ । ଦିନେ ସୁଦ୍ଧା ଘରେ ଅନ୍ନ ଛୁଟେଣି ନାହିଁ । ମନରେ କିଛି ଭାବନା ନାହିଁ, ଖାଇବା କଥା ପଡ଼ିଲେ ଦୁଇଜଣଯାକ କହନ୍ତି, ମୁଲକରେ ଏତେ ବିଲ, ଗଡ଼ଆ ପୋଖରୀ ଥାଉଁ ଥାଉଁ କିଏ ଦିଟା ପ୍ରାଣୀ ପେଟ ପୂରିବ ନାହିଁ ? ଟେମୀ କହେ, "ଏ ଖାଉନ୍ଦ ! ତେମେ କାହିଁକି

କପର ପାଇଟିକ ଯିବ । ବାଜୁଙ୍ଗା ଝାଡ଼ ଆଣିଲେ ତ ଆମର ଛ ମାସ ମେଣ୍ଟିଯିବ ।” ବେଳ ଜାଣି ଚେମୀ କୁଳଟାରେ କାଠି ଖଣ୍ଡେ ବାନ୍ଧ ଢ଼େର ବାଜୁଙ୍ଗା ଝାଡ଼ ଆଣି ଘରେ ରଖେ । ଖାଉନ୍ଦକୁ ବାଧିବ ବୋଲି ଚେମୀ ରୋଜ ରୋଜ ତାକୁ ପାଇଟିକୁ ପଠାଏ ନାହିଁ, ବାଜୁଙ୍ଗାରେ ଅନ୍ନ ଚଳାଏ । ଯେଉଁଦିନ ସପ୍ନା ସାଆନ୍ତଘର ପାଇଟିକୁ ନ ଯାଏ, ସେ ଦିନ ଦୁଇଜଣ ପୋଖରୀ ପୋଖରୀ ବୁଲି ବୁଲି କଚ୍ଛିମ, କଙ୍କଡ଼ା, ମାଛ ଧରି ଆଣନ୍ତି । ସେ ଦିନ ଚେମୀ ଢ଼େର ରକମ ତିଅଣ ରାନ୍ଧେ, ଦୁଇ ଜଣଙ୍କର ଭାରି ଆନନ୍ଦ ।

ରାତିରେ ଚେମୀ ରନ୍ଧାବଢ଼ା କରୁଥିବାବେଳେ ସପ୍ନା ହରିଣୀସ୍ତୁତି, ଗଜସ୍ତୁତି ଗାଏ । ଭାଗବତ ବି ଢ଼େର ପଦ ଶିଖିଛି; ଏଠୁ ସେଠୁ ଢ଼େର ପଦ ଗାଏ । ଚେମୀ କାନ ଡ଼େରି ଶୁଣୁଥାଏ । ପଢ଼ାଟଡ଼ି ସରିଲେ ‘ଠାକୁର —ହରି, ଦୟାକର’ କହି ହାତଯୋଡ଼ ଭୂଇଁରେ ଡ଼ପ ଡ଼ପ କରି ତିନି ଥର ମୁଣ୍ଡିଆ ମାରେ, ତା ବାଦ ସପ୍ନା ଗୋଡ଼ତଳେ ତିନି ଥର ଜୁହାର ହୋଇ ତା ପାଦରୁ ଧୂଳି ନେଇ ମୁଣ୍ଡରେ ମାରେ । ପ୍ରତିଦିନ ସଞ୍ଜବେଳେ ଏହିପରି କରେ । ଯେଉଁଦିନ ହାତରେ କିଛି ପାଇଟି ନାହିଁ, ଦୁଇଜଣ ଦୁଇଜଣଙ୍କୁ ଅନାଇ ପିଣ୍ଡାଟାରେ ବସିଥାନ୍ତି ।

ବୁଢ଼ା ରାମ ପରିଡ଼ାକୁ ସପ୍ନା ଅଜା ସାଆନ୍ତ ବୋଲି ଡାକେ, ତାଙ୍କର ଘରେ ଢ଼େର ଦିନ ପାଇଟି କରେ । ପରିଡ଼ା ବୁଢ଼ା ଦିନେ ଦିନେ ସପ୍ନାକୁ ଡାକିବାକୁ ଆସି ଦେଖେ, ଦୁଇଜଣ ଏକା ଜାଗାରେ ବସିଛନ୍ତି—ଟାପରା କରି କହେ, “କିରେ ସପ୍ନା, ତୁମେ ଦୁଇଟା ଯେ ବଗଲା ବଗୁଲି ପରି ବସିଛ !” ରୋଜ ରୋଜ ଟାପରା କରି ବଗଲା ବଗୁଲି ବୋଲି କହୁଁ କହୁଁ ପରିଡ଼ାର ଅଭ୍ୟାସ ହୋଇଗଲାଣି । ସବୁବେଳେ ଡାକେ, “ଆରେ ବଗଲା, ଆଲୋ ବଗୁଲି !” ତା ଶୁଣାଶୁଣି ଗାଁ ଲୋକେ ବି ଡାକିଲେଣି ବଗଲା ପାଶ । ଗାଁ ମାଇକିନିଆମାନେ ବି ଚେମୀକୁ ଟାପରା କରି କହନ୍ତି, “ଆଲୋ ବଗୁଲି, ତୋ ବଗଲା ଲାଗି କଣ ରାନ୍ଧିଥିଲୁ ?” ସତକୁ ସତ ସମସ୍ତେ ଦେଖୁଛନ୍ତି, ସବୁଦିନେ, ସବୁବେଳେ ବଗଲା ବଗୁଲି ପରି ଦୁଇଜଣ ଏକା ସାଙ୍ଗରେ ଅଛନ୍ତି । ଶେଷକୁ ଗାଁରେ ନାମ ହୋଇଗଲାଣି—ବଗଲା ବଗୁଲି ।

ବର୍ଷାଦିନରେ ବଗଲା ବଗୁଲିର ଭାରି ଆନନ୍ଦ । ବିଲ ବଚ୍ଛା ବେଳେ ଦୁଇଜଣଙ୍କୁ ପାଇଟି ମିଳେ । ସପ୍ନାର ମୂଲ ପାଞ୍ଚମାଣ, ଚେମୀର ଗୁରିମାଣ; ଖାଇ ପିଇ ପାଞ୍ଚମାଣ ଧାନ ବଳିପଡ଼େ ।

ଏଇଟା ବଡ଼ ଭଲ ବର୍ଷ । ଅର୍ଜ୍ଜନ ଗୃହଆଡ଼େ । ପଛପାଣିଆ ଯୋଗୁଁ ସମସ୍ତଙ୍କ ବିଲବଗ୍ଚ ଏକ ସାଙ୍ଗରେ, ମୂଳଆ ମିଳୁ ନାହାନ୍ତି । ମୂଲ ବଢ଼ି ଯାଇଛି, ସପ୍ନାର ମୂଲ ନ ମାଣ, ଚେମୀର ପାଞ୍ଚ ମାଣ । ଘରେ ଧାନ ଟୋଟାଏ ମାଠିଆ, ଯୋଡ଼ାଏ ଛାଡ଼ିଆ ଭର୍ତ୍ତିହୋଇ ସପ୍ନା ଗୋଟିଏ ସାନ ଓଳଆ ବାନ୍ଧ ଦେଲଣି । ଲକ୍ଷ୍ମୀ ଆଲଙ୍ଗନ କଲାବେଳେ ଗୃହଆଡ଼ୁ ଅର୍ଜ୍ଜନ ମିଳେ । ବିଲ ବଗ୍ଚବେଳେ ହାତରେ କଙ୍କଡ଼ା ଚେଙ୍ଗ ପଡ଼ଯାଏ, ହିଡମୂଳରେ ମଦରଙ୍ଗା କାନସିର ଶାଗ ବଲବଲ, କାମ ଉଠାଣି ହାତ ବୁଲେଇ ଦେଲେ ଦିନତ ମାମ ଚଳିଲା । ଏ ବାଦେ ଚେମୀ ବିଲ ହିକର ମୂଳରୁ କାଇଁଶ କାଟିଆଣି ଟୋଟାଏ ଖଇଞ୍ଚ ବୁଣିଛି । ଚେମୀକୁ ଢ଼େର ପାଇଟି ଆସେ । କାଇଁଶ ପାଚିଆ ବୁଣି ଗାଁ ବୋହୂ ଝିଅଙ୍କୁ ଦିକ ଗୃଉଳ ଧାନ ଆଣେ । ଦୁଇ ଜଣବେଲପିଗ୍ଚ ପାଇଟିରେ ଲାଗିଥିବାବେଳେ ଖଇଞ୍ଚି ପାଣିମାହାର ହିଡମୂଳରେ ବସାଇ ଦେଇଥାନ୍ତି । ପାଇଟି ଉଠାଣି ବେଳକୁ ଚେଙ୍ଗ କୁଟୁରି, କଉ ଟିପିରି, ଦେଉଳ ପହଣା ଖଇଞ୍ଚରେ ଭର୍ତ୍ତି । ଦିନେ ଦିନେ ଦୁଇ ତିନଥର ଖଇଞ୍ଚ ଝାଡ଼ିପକାନ୍ତି ।

ଆଜ କାଲ ସଞ୍ଜବେଳେ ଦୋକାନୀ ଦୁଆରକୁ ଧାନ ନେଇ ଯିବାକୁ ହୁଏ ନାହିଁ ମାଛ ଦି ହଡା ନେଇଗଲେ ତେଲ ଲୁଣ ଧୂଆଁ ପତ୍ରସବୁ ମିଳିଗଲା । ଚେମୀ ଦି ନଉତ ସରିକ ପିତା ଶୁଖୁଆ ଶୁଖାଇ ଗୃହମାସ ତିଅଣକୁ ଥାଳ ବାନ୍ଧ ସାରିଲଣି । ଭଲ କରି ଶୁଖାଇ ଶୁଖୂଆଗୁଡ଼ିକ ଗୋଟିଏ ପାଛିଆରେ ପୂରାଇ ଘର ଶେଣୀରେ ଟଙ୍ଗା ଶିକାଟିରେ ଥୋଇଦେଇଛି । ଆଜକାଲ ଦି ପ୍ରାଣୀ ଭିତରେ ଆନନ୍ଦର ସୀମା ନାହିଁ ।

ଆଶିଣମାସିଆ ଦିନେ ରାତି ଘଡ଼ିକ ବେଳେ ଦି ଜଣଙ୍କର ଝିଆ ପିଆ ସରିଲାଣି । ଚେମୀ ଗୁଡାଏ ବିଲ ମାଛ ବୁଢ଼ୀ ପରିଡ଼ାଣୀକୁ ଦେଇ ମାଟିକୁମ୍ଭାରେ କୁମ୍ଭାଏ କରଞ୍ଜ ତେଲ ଜଣିଆଣି ଘରେ ଥୋଇଦେଇଛି । ମଫସଲର ଗୃହବନ୍ଧ ଘରେ ସମସ୍ତେ ଖରାଦିନେ ତେଲି ଦୁଆରୁ କରଞ୍ଜ ପେଡ଼ି ଆଣି ବର୍ଷା ଦିନ ଲାଗି ତେଲ ସାଇତି ରଖିଥାନ୍ତି । ଦିନଯାକ ପାଣି କାଦୁଅରେ ବୁଲି ବୁଲି ଗୋଡ଼ ଯୋଡ଼ାକ ପାଣି ଖାଇ ସିଠୁଆ ପଡ଼ଯାଏ, ଆଙ୍ଗୁଳି ସନ୍ଧ ସବୁ ଘା ହୋଇଯାଏ ରାତିରେ କରଞ୍ଜ ତେଲ ଲଗାଇ ଦେଲେ ଚହିଁ ଆଉ ଦିନ ସକାଳକୁ କଷ୍ଟ ନ ଥାଏ । ଖଣ୍ଡେ ଛିଣ୍ଡା କନ୍ତର ପାରି ଦେଇ ସପ୍ନା ଶୋଇ ପଡ଼ିଛି । ଚେମୀ ଗୋଡ଼ରେ ପାଣିଖିଆ ଜାଗା ଆଙ୍ଗୁଳି ସନ୍ଧମାନଙ୍କରେ କରଞ୍ଜ

ତେଲ ଲଗାଇ ଦେଉଛୁ । ଚେମ୍ପୀ କଥା ଆରମ୍ଭ କଲା, "ଏ ଖାଉନ୍ଦ ! ତେମେ ଦେଖ; ଘରେ ଶୋଇପଡ଼ିବାକୁ ଆଉ ଜାଗା ନାହିଁ । ବାଜୁଙ୍ଗା ପାଚିଲାଣି । ମୁଁ କାଲି ସକାଳୁ ଝାଡ଼ିବି । ଆଉ କେଉଁଠି ରଖିବା ? କଣ କରିବା ?"

ସପ୍ନା—ହଁ ଲୋ ବୋଉ ! ମୁଁ ସେଇକଥା ଉଠୁଣିକା ମନରେ ପକାଉ ଥିଲି । ଆଚ୍ଛା, ଧାନ ବିକି ଦେଇ ଟଙ୍କା ପଇସା ଆଣି ଘରେ ରଖିବା ।

ଚେମ୍ପୀ—ନାହିଁ, ଏ ଖାଉନ୍ଦ —ସେ ବଡ଼ ଅଳଆ କଥା । କେତେ ଧାନକୁ କେତେ ପଇସା ଗଣି ଜାଣିବା ନାହିଁ, ଆଉ ଟଙ୍କା ପଇସା ଦେଖିଲେ ଚୋର ଟେକ୍‌ର ଦୁଆରକୁ ଆସିବେ । କେଉଁଠି ପୋତି ପକାଇବା, ଭୁଲି ଗଲେ ଗଲା । ମୋ ମା ଥରେ ଗୁରେଟା ପଇସା ପୋତି ପକାଇଥିଲା—ପାଇଲା ନାହିଁ, ଡେର କାନ୍ଦିଲା ।

ସପ୍ନା—ତେବେ ଧାନ ସବୁ ଗ୍ରାମ ସାଆନ୍ତ ଚନ୍ଦ୍ରକୁ ଦେବା, ସେ ତୋ ଲାଗି ଖଣ୍ଡେ ରଙ୍ଗ କସ୍ତାଶାଢ଼ୀ ବୁଣିଦେବ ।

ଚେମ୍ପୀ—ନାହିଁ, ଖାଉନ୍ଦ ! ମୁଁ ପିନ୍ଧି ଜାଣିବି ନାହିଁ; ଚିରିଯିବ । ମୁଁ କହୁଛି, ଅଜା ପରିଜା ସାଆନ୍ତ ଶୀତଦିନେ ଯିମିତିକା କଳା ଅଙ୍ଗା ଲଗାନ୍ତି, ତେମେ ବାଲିସର ହାଟକୁ ଯାଇ ସିମିତିକା ଗୋଟାଏ କିଣି ଆଣ । ଶୀତ ହେଲେ ଲଗାଇବ, ସୁନ୍ଦର ଦିଶିବ ।

ସପ୍ନା—ତୁ ନାଲି ରଙ୍ଗ ଶାଢ଼ୀ ପିନ୍ଧିଲେ ସୁନ୍ଦର ଦିଶିବୁ ।

ଚେମ୍ପୀ—ତେମେ ଅଙ୍ଗା ଲଗାଇଲେ ସୁନ୍ଦର ଦିଶିବ ।

ଦୁଇ ଜଣ ଭିତରେ ଡେର ବେଳଯାଏ କଥା ଚାଲିଲା । ଶେଷରେ ସପ୍ନା ପ୍ରସ୍ତାବରେ କଥା ସ୍ଥିର ହେଲା, କାବୁଲି ପଠାଣ ଆସିଲେ ତାକୁ ସବୁ ଧାନ ଦେଇ ଗୋଟାଏ ରଙ୍ଗ କମ୍ବଳ କିଣିବେ, ଶୀତ ଦିନରେ ଝଡ଼ିକା ହେଁସ ଘୋଡ଼ି ହେବ ନାହିଁ, ସେଇ କମ୍ବଳ ଘୋଡ଼ିହେବେ । କଥା ଭାଷା ହେଉଁ ହେଉଁ ଦୁଇ ଜଣଯାକ ଶୋଇପଡ଼ିଲେଣି ।

ଦିନ ଘଡ଼ିଏ ହେଲାଣି, ଦି ଜଣଯାକ ଶୋଇଛନ୍ତି । ରୋଜ ରୋଜ ଚେମ୍ପୀ ଆଗରେ ଉଠେ, ଆଜି ଉଠି ନାହିଁ । ସପ୍ନା କହିଲା, "କି ଲୋ ବୋଉ, ତୋ ଦିହ ତାତିଲା ପରି ଲାଗୁଛି, ଜର ହେଲା କି ଲୋ ?"

ଟେମୀ—ହଁ, ହିହିଟା କମିତିକା କସମସ କରୁଛି । ଏ ଖାଉନ୍ଦ, ତମ ହିହିଟା ଲାଗୁଛି, ଜର ହେଲା କି ? ଆଲୋ ମା ଲୋ ! ଆଲୋ ବୋପା ଲୋ ! କଣ କରିବି ଲୋ ! ଠାକୁର ହରି ! ମୋ ବାପଗାଁ ମଙ୍ଗଳା ! ମୋ ଖାଉନ୍ଦକୁ ଭଲ କରିଦେ ।

ସପ୍ନା--ନାହିଁ ଲୋ ବୋଉ, ଡର ନା, ଠାକୁରେ ଭଲ କରିଦେବେ । ତୁ ଯା ପଥି ରାନ୍ଧ, ମତେ ମାଣେ ଧାନ ଦେ, ସାଉଦୁଆରୁ ରସୁଣ ଘେନି ଆସେଁ ।

ଗରମ ଗରମ ପେଜମିଶା ଭାତରେ ପାଣି ଢାଳି ରସୁଣ ଦେଇ ଦୁଇ ଜଣ ପଥି କଲେ ।

ଚାରିଦିନ ଗଲା, ପାଞ୍ଚଦିନ ଦିନ ସପ୍ନାର ଜର ବଳାପଡ଼ିଲା, ପଥି ଛାଡ଼ିଲା । ଟେମୀର ଜର ଟିକିଏ ଭଲ ହେଲାଣି । ଟେମୀର ଖାଇବାର ନାହିଁ, ଶୋଇବାର ନାହିଁ । ସପ୍ନାର ତ ବଳେ ନିଦ ନାହିଁ । ଟେମୀ ଗୋଡ଼ତଳେ ବସି ଦିନରାତି ଖାଲି ଠାକୁର ହରି ଆଉ ବାପ ଗାଁ ମଙ୍ଗଳାକୁ ଡାକୁଛି । ଟେମୀ ଆଉ ଧୈର୍ଯ୍ୟଧରି ରହିପାରିଲା ନାହିଁ । ଖାଉନ୍ଦକୁ କହି ଗାଁ ବୈଦ୍ୟରାଜ ନକୁଳ ନାୟକ ଦ୍ୱାରକୁ ଧାଇଁଲା । ସେ ଏକୁଟିଆ କେବେ ଘରୁ ବାହାରି ନାହିଁ । ଆଜି ଗାଁ ଗୋହିରି ମଝିବାଟେ ଚାଲିଛି । ଗୋଡ଼ ପୋତି ପଡ଼ୁଛି, ଆଖିରେ ପାଣି ଭରି, ବାଟ ଦିଶୁ ନାହିଁ—ବୈଦ୍ୟ ଘରକୁ ଧାଇଁଛି । ଟେମୀ ପାଞ୍ଚ ଛ ବର୍ଷ ହେଲା ଶଶୁର ଗାଁକୁ ଆସିଲାଣି, କାହାରି ମୁହଁ ଦେଖି ନାହିଁ, କାହାରିକୁ ଅନାଏ ନାହିଁ, ଖାଉନ୍ଦ ଛଡ଼ା ଆଉ କାହାରି ସାଙ୍ଗରେ କଥା ନାହିଁ । ଠାକୁର ଦେବତାଙ୍କୁ ମନ ମଧ୍ୟରେ ଡାକି ଡାକି ଖୁବ୍ ହିମତ ଧରି ଗଲା । ହିମତ ଧରି ବୈଦ୍ୟରାଜଙ୍କୁ ସପ୍ନା ଜର କଥା କହିଲା । ବୈଦ୍ୟ ନକୁଳ ନାୟକ ବଟୁଆ ଫିଟାଇ ଗୋଟାଏ ତସର କୁଆ ଭିତରୁ ଚାରିଟା ଜ୍ୱରରାଘବ ବଟିକା କାଢ଼ିଦେଲେ; କହିଲେ, "ତୁ ତ ମନ୍ତ୍ର ଯାଇବୁ ନାହିଁ, ତୁଳସୀରସ ଜରପାପଡ଼ା ରସ ଗୋଳିଦେଇ ଚାରି ପହରରେ ଚାରିପାନ ଦେବୁ, ଜ୍ୱର ନ ଛାଡ଼ିଲେ ପାଣି ଧରି ଆସିବୁ ।" ଛ'ଦିନ ଦିନ ଜ୍ୱର ବଳ ପଡ଼ିଲାଣି । ଟେମୀ ସାଙ୍ଗରେ କଥା ନାହିଁ, କେତେବେଳେ ଗୀତ ଗାଉଛି, ଭାଗବତ ପଦ ପଢ଼ୁଛି, ବଳି କଥା କହୁଛି, ଆଖି ଯୋଡ଼ାକ କୋଚଆ ଭଳି

ପଶ ଲ୍‌ଲ । ଚେମୀ ସାରୁ ପଖଟାରେ ପାଣି (ଜୁତ) ଧରି ଖାଉନ୍ଦକୁ କଟୁ ନ କହି ବୈଦ୍ୟ ଦୁଆରକୁ ଧାଇଁଲା । ବୈଦ୍ୟରାଜ ଦୁବଘାସ କେଇକରେ ପାଣିରେ ଟୋପାଏ ତେଲ ପକାଇଲେ, ତେଲବୁନ୍ଦା ଧରି ରହିଲା, ମେଲଲା ନାହିଁ । ରୋଗୀର ବୃତ୍ତାନ୍ତ ସବୁ ଶୁଣି କହିଲେ, "ଘୋର ସନ୍ନିପାତ, କସ୍ତୁରୀ ଭୈରବ ବଟିକା ଲୋଡ଼ା, ଗୁଏଟଙ୍କା ଦାମ୍, ଆଣ ।" ଚେମୀର ପାଟି ପ୍ରାୟ ପଡ଼ିଗଲାଣି; ଖୁବ୍ କଷ୍ଟରେ କହିଲା, "ମୁଁ ଟଙ୍କା କାହୁଁ ପାଇବ, ଘରେ ଧାନ ଅଛି, ସବୁ ଆଣିଦେବ ।" ଚେମୀ ଘରକୁ ଧାଇଁ ଧାଇଁ ଆସିଲା; ଖାଉନ୍ଦଙ୍କୁ ଅନାଇଲା, କଟୁ କଥା କହିଲା ନାହିଁ । କହିବ କ'ଣ – ଖାଉନ୍ଦ କଥା ଶୁଣୁଛି ନାଁ କହୁଛି, ଖାଲି ଉଠ ବସ ହେଉଛି; ପାଟିକରୁଛି । ଚେମୀ ପାଛୁଆଟିରେ ପାଛୁଆଏ ଅମପା ଧାନ ପୂରାଇ କାଖେଇ ବୈଦ୍ୟ ଦ୍ୱାରକୁ ଧାଇଁଲା । ବୈଦ୍ୟ ଆଗରେ ଧାନ ଢୁଡ଼େଇଦେଲା – ଚେମୀ ମା' ବଞ୍ଚିବେଳେ ଅଡ଼େଇ ମସା ରୂପାର ଗୋଟାଏ ମୁଦି ଦେଇଥିଲା, ଘୋରିଯିବ ବୋଲି ଚେମୀ ସବୁଦିନେ ଲଗାଏ ନାହିଁ, ସେହି ମୁଦିଟା ବୈଦ୍ୟଙ୍କୁ ଦେଲା । ତାଙ୍କ ପାଖରୁ ଔଷଧ ନେଇ ଧାଇଁଛି । ଚେମୀ ଗୁଡ଼ିଦିନ ହେଲା ଟୋପାଏ ପାଣି ମୁହଁରେ ଦେଇ ନାହିଁ, ତା' ଜ୍ୱର ବି ଭଲ ଗୁଡ଼ି ନାହିଁ, ଭିତରେ ଭିତରେ ଜ୍ୱର ଅଛି । ସକାଳୁ ଦିନ ଦି'ପହର ଯାଏ ଧାଇଁଛି । ଚେମୀ ଘରକୁ ଯାଇ ଦେଖିଲା, ସପ୍ନା ପାଟି ଆଁ କରି ପଡ଼ିଯାଇଛି । ଚେମୀ 'ଏ ଠାକୁର ମଙ୍କଳା' କହି ସପ୍ନା ଗୋଡ଼ତଳେ ଢୁଲି କରି ପଡିଗଲା । ସପ୍ନାର ଟିକଏ ଟିକଏ ଜ୍ଞାନ ଥିଲା । ଚେମୀ ମୁହଁକୁ ଏକ ଧ୍ୟାନରେ ଅନାଇଛି । ଦୁହେଁ ଦୁହିଁଙ୍କୁ ଦେଖୁଛନ୍ତି ।

ତହିଁ ଆରଦିନ ଗାଁରେ ଚହଳ ପଡ଼ିଗଲା – ବଗଲା ବଗୁଲୀର ଜର ହୋଇଥିଲା, ଦୁଇ ଦିନ ହେଲା ତାଟି ଫିଟି ନାହିଁ । ଗାଁଲୋକେ ଧାଇଁଲେ । ସମସ୍ତେ ହାପୁ ହାପୁ କରୁଛନ୍ତି । ଜମିଦାର ବାବୁ ସପ୍ନା ଶଶୁର ଗାଁକୁ ଧାଉଡ଼ିଆ ପାଇକ ପଠାଇଦେଲେ ।

ଗାଁର ସମସ୍ତ ସ୍ତ୍ରୀ ଚେମୀ ଲାଗି ହାପୁ ହାପୁ କଲେ, ଯିବାବେଳେ ସମସ୍ତେ ହୁଳହୁଳି ପକାଇଲେ । ଗାଁର ସମସ୍ତଙ୍କ ମୁହଁରେ ଏକ କଥା—ଧନ୍ୟ ଧନ୍ୟ ସ୍ୱାମୀ ସ୍ତ୍ରୀ ପ୍ରେମ । ନୀଚ କୁଳରେ ବି ଏମନ୍ତ ଧର୍ମ, ଏମନ୍ତ ପ୍ରେମ କଥା !

# କମଳାପ୍ରସାଦ ଗୋରାପ

ଏଡେବଡ କାରବାରୀ ଘର, କୁଆ କା କାଲ୍ କଣ୍ଠରୁ ଅଧାରାତିଯାଏ ଗହଳ ଚହଳ ଲାଗିଥାଏ । ଆଜି ସବୁ ତୁନି ତାନି । ବାଟ ଗଲା ଲୋକେ ବୁଝିବେ, ଏଡ଼େବଡ ଦୋତାଲା ଘରଟାରେ କେହି ମଣିଷ ନାହାଁନ୍ତି, ଛୁଞ୍ଚି ପଡ଼ୁଛି। ସ୍ୱରୂପ ମାଝି ଭୋର ଭୋର ପହଞ୍ଚିଲା ବେଳକୁ ବାବୁଙ୍କ ଘର ଉପରେ ଯେମିତି ଚଡକ ଟାଏ ପଡ଼ିଯାଇଛି । ଭିତର ପ୍ରସ୍ତରେ ମାଇକିନିଆଁ ଗୁଡ଼ାଙ୍କର କବର କାବର ପାଟି, ସାଆନ୍ତାଣୀଙ୍କ କଡା ହୁକୁମ, ପିଲାଗୁଡାଙ୍କର ଧାଁ ଦୌଡ଼ ଗହଳ ଚହଳ, ବାସନ କୁସନର ଝମଝାମ ଶବ୍ଦ କିଛି ଶୁଭୁ ନାହିଁ । ଚାରିମା ଦାସୀ 'ହାପୁ ହାପୁ' କରି କାନ୍ଦ ପକାଉଛି, ତାହାର ପାଞ୍ଚ ମାସର ଦରମା ସାଡେ ସାତ ଟଙ୍କା ଆଗତୁରା ନେଇ ବଟମ ଦେଇଥିଲା । ଖିମା ଆଣ୍ଠି ଜୀବନଯାକ ଛଞ୍ଚି ଛଞ୍ଚି ବେକରେ ଯୋଟାଏ ସୁନାମାଳୀ ଲଗାଇଥିଲା, କୋଡିଏ ଟଙ୍କାରେ ବନ୍ଧାପଡ଼ିଛି । ବଡ ଆଶା କରିଥିଲା, ବଟମରେ ବଢ଼ି ତିରିଶ ଟଙ୍କା ଦେଲେ ଟଙ୍କାଏ ପାଞ୍ଚ ସୁକା କଳନ୍ତର ଫୋପାଡ଼ି ଦେଇ ମୁଠାଏ ଟଙ୍କା ଅଧିକା ପାଇଯିବ । ସେଇଟା ନହାତି ସମ୍ଭାଳି ନ ପାରି ବାଡ଼ି ଦୁଆରେ ବସି ବାହୁନି ବାହୁନି କାନ୍ଦୁଛି । ସାଆନ୍ତାଣୀଙ୍କ ଡ଼ରରେ ଘର ମଧ୍ୟରେ କେହି ପାଟି କରିପାରୁ ନାହିଁ । ମନଦୁଃଖରେ ବାବୁଙ୍କର ଅଣ୍ଟା ବସିଗଲାଣି, କେଭିକା ମାରିଲା ପରି ତୁନି ହୋଇ ବସିଛନ୍ତି । ଘରେ ଗୋଳମାଳ ହେଲେ ସେ ହକ୍‌ଦାର ହେବେ, ଏଥିପାଇଁ ସାଆନ୍ତାଣୀଙ୍କର ମନା, କେହି ପାଟି କରିବେ ନାହିଁ ।

ନେଜ ବାବୁ ରାମହରି ନାୟକେ କଚେରୀ ଘରେ ଆପଣା ଗଦିରେ ବଡ ମାଣ୍ଡି ଠାକୁ ଆଉଜି ତୁନି ହୋଇ ବସି ହୁକା ଟାଣୁଛନ୍ତି । କାହାରି ସାଙ୍ଗରେ କଥା ନାହିଁ କେହି ଭରସି ପାଖେ ପଶିପାରୁ ନାହିଁ । ହୁକାଟି ବୈଠକରେ ଥୋଇ ଦେବା ମାତ୍ରକେ ରାମା ଭଣ୍ଡାରୀ ପିଲା ଚିଲମ ବଦଳାଇ ଦେଉଛି । ତା ମନରେ ବି ସୁଖ ନାହିଁ । ସେ ବି ଏଣୁତେଣୁ ଚୁଣ୍ଡେଇବାଣ୍ଟିଛି

ସାଢ଼େ ଦଶ ଟଙ୍କା ବଟମ ଦେଇଥିଲା । ଘରେ ବୋହୂ, ଝିଅ, ଖୋଦ ସାଆନ୍ତାଣୀ ସମସ୍ତେ ମଗଦୁର ଭଳି କିଛି କିଛି ବଟମ ଦେଇଥିଲେ, ଶେଷ ଛୁଆ ନାଁରେ ବି ମା'ମାନେ ବଟମ ଦେଉଥାନ୍ତି ।

କଚେରି ଘର ଅଗଣାରେ ଗୋଟିଏ କଣରେ ମାଝି ସ୍ୱରୂପ ବେହେରା ପାୟା ମୂଳରେ ଗାଲରେ ହାତଦେଇ ମୁହଁପୋତି ବସିଛି । ତାହାର ଦୁଇ ତିନି ହାତ ଛଡ଼ାରେ ରାମ ବେହେରା ଓ ମହମ ବେହେରା ଦୁଇ ଜଣ ଖଲାସୀ (୧) ସମସ୍ତେ ମୁଣ୍ଡ ପୋତି ବସିଛନ୍ତି, କାହାରି ମୁହଁରେ କଥା ନାହିଁ । ପହରଣ ସମସ୍ତଙ୍କର ଏକ ଶ୍ଳେଟିଆ, ମଇଳା ଚିରୁକୁଟା ଚିରା ଖଣ୍ଡେ ଖଣ୍ଡେ ଲୁଗା । ଖାଲି ମାଝି ବେକରେ ଖଣ୍ଡେ ମଇଳା ଗାମୁଛା ପଟକା ପରି ପଡ଼ିଛି । ସମସ୍ତଙ୍କ ଦେହସାରା ଧୂଳି କାଦୁଅବୋଳା । ମୁହଁରେ ଚକେ ଚକେ ରୁଢ଼ ।

କଚେରି ଘରୁ ବାବୁ ଡ଼ାକଦେଲେ, "ମାଝି !" ସ୍ୱରୂପ ମାଝି 'ଆଜ୍ଞା ହଜୁର' ଉତ୍ତର ଦେଇ ବାବୁଙ୍କ ଆଗରେ ଛିଡ଼ା ହୋଇଗଲା । ବାବୁ ମାଝିକୁ ଅନାଇଦେଲେ—'ହୁଁ' ବୋଲି କହି ଗୁଡ଼ାଖୁ ଟାଣିବାକୁ ଲାଗିଲେ । ପୂରା ଚିଲମେ ଗୁଡ଼ାଖୁ ଉଡ଼ିଗଲାଣି, ମାଝି ମୁଣ୍ଡ ପୋତି ଛିଡ଼ାହୋଇଛି । ପାଘଣ୍ଟା ବାଦେ ବାବୁ ମାଝିକୁ ଆଉ ଥରେ ଅନାଇ କହିଲେ, "କଣ ହେଲା ମାଝି, ଅସଲ କଥାଟା ଆଉ ଥରେ ଠିକେ ଠିକେ ବୋଲି ଯା ତ ।" ବାବୁଙ୍କ କଅଁଳ କଥା ଶୁଣି ମାଝି ପ୍ରଥମେ କାନ୍ଦପକାଇଲା । ତହିଁବାଦେ ସମ୍ଭାଳି ଯାଇ ସକେଇ ସକେଇ ଧୀରେ ଧୀରେ କହିବାକୁ ଲାଗିଲା, "ଆଜ୍ଞା—ଗଲା ଉଆଁସ ବାସି ପଡ଼ିପଦା ଦିନ ଅଢ଼ତଦାର ଆପୁଡୁ ସ୍ୱାମୀ ପାଖରୁ ହେର ହେର ଟଙ୍କା ଟୋକର ଗଣି ନେଇ ଦିନ ଦୁଇପହର ସରକ ଚନାପାଟଣା ହାଡୁ ବାହାରୁ (୨)ଲଙ୍ଗର ଉଠାଇଦେଲୁଁ ।" ବାବୁ ପଚାରି ଦେଲେ 'ଅଢ଼ତଦାର ହିସାବ ଛିଣ୍ଡାଇ ସବୁ ଟଙ୍କା ଦେଇଛି, ନା ଆଉ କିଛି ଅଛି ?"

ମାଝି—ଅଢ଼ତଦାର ମତେ ନଗଦ ବାରହଜାର ଟଙ୍କା ଗଣିଦେଲା । ହିସାବ ଡ଼ାକରେ ପଠାଇବ ବୋଲି କହିଲା ।

---

(୧) ଖଲାସୀ—ଜାହାଜର ନିମ୍ନଶ୍ରେଣୀର ଚାକର ।

(୨) ଚନାପଟାଣା ହାଡୁ ବାହାରୁ—ମାନ୍ଦ୍ରାଜ ହାର୍ବର ।

ବାବୁ ବାକ୍ସ ଫଟାଇ ଗଲ କାଲି ଡ଼ାକରେ ଆସିଥିବା ମୋଟା ଚିଠି ଖଣ୍ଡି ବାହାର କଲେ, ତାହା ଭିତରୁ ଲାଲରଙ୍ଗ ପାତଳ କାଗଜରେ ତେଲଙ୍ଗୀ ଲେଖା ଏକକୋଣିଆ ସୂତାରେ ଗୁନ୍ଥା ଗୋଟାଏ ଚିଠି କାଗଜ ବାହାର କଲେ, ଏପାଖ ସେପାଖ ଓଲଟ ପାଲଟ କରି ଖାରେଶ ଲିଙ୍ଗମକୁ ଡ଼ାକ ପଠାଇଲେ । ଖାରେଶ ଲିଙ୍ଗମ ତେଲଙ୍ଗୀ ଗୁମାସ୍ତା । ଦକ୍ଷିଣ ଅଞ୍ଚଳରୁ ଆସୁଥିବା ଚିଠିମାନ ପଢ଼ି ବାବୁଙ୍କୁ ଓଡ଼ିଆରେ ବୁଝାଇଦିଏ । ପିଅନ୍ଦା ଗୁମାସ୍ତାକୁ ଡ଼ାକିବାକୁ ଧାଇଁଲା । ଏହିଭିତରେ ବାବୁ ମାଝିକୁ ଅନାଇ କହିଲେ, "ହୁଁ—"

ସ୍ୱରୂପ ମାଝି ଲଙ୍ଗର ଉଠାଇ ଶେଡ଼ ଯେ ହଙ୍କାରିଛି, ସେଇ ହଙ୍କାରିଛି । ପୂରା ଆଠ ଦିନ ଦିନରାତି ଜାହାଜ ଧାଇଁଥାଏ । ଦକ୍ଷିଣା ପିଚ୍ଛାଡ଼ ପବନ—ଆକାଶ ନିର୍ମଳ—ଦରିଆଟା ପୋଖରୀ ପାଣି ପରି ଧୀର । ଜାହାଜ ସୁକାନରେ ଖାଲି ହାତ ପଡ଼ିଥାଏ, ସଳଖ ଜାହାଜ ଧାଇଁଛି । ନଅ ଦିନ ରାତି ପହରକ ସରିକି କଟକ ବାରି ଫଲସାପେଣ୍ଟ ବତି (୧) ଯିମିତି ନଜର ପଡ଼ିଛି, ପଛ ପଟରୁ ଟିକିଏ ପବନ ଝିଲିକ ଦେଲା, ବେଳକୁ ବେଳ ଟିକିଏ ଟିକିଏ ବଢ଼ିବାକୁ ଲାଗିଲା । ବଢ଼ିଲାଧରି ବଢ଼ିଲା, ସମାଳ, ସମାଳ—ରାତି ଅଧ ବେଳକୁ ଅଥୟ । ଦରିଆ ଆକାଶ ଏକାକାର, ତାଳଗଛ ପ୍ରମାଣ ଢେଉ । ଆଗ ଦୁଇ ନଙ୍ଗର ପଛ ଲଡାଡ଼ ପକାଇ ଦେଲି, ପଟାପଟ ଛିଡ଼ିଗଲା । ରାତିଯାକ ଏକ ହାଲ, ଆଉ ସମ୍ଭାଳ ହେଲା ନାହିଁ । ଅଧରାତି ସରିକି ଜାହାଜ ଗାମଦ ହେଲା, ସମସ୍ତେ ମିଶି ପାଣିମରିରେ ଲାଗିଥାଉଁ । ଭୋର ଭୋର ଜାହାଜ ବସିଗଲା । ଦିନ ହେଲା, ଦେଖିଲୁଁ ଧାମରା ଦଣ୍ଡ଼ିଅଳ ମୁହାଣ । ଆଉ ଖବର ନାହିଁ, ବଡାଳିକୁ (୨) ଓହ୍ଲାଇ ଅସିଲୁଁ ।

ବାବୁ ପଚାରିଲେ—ଟଙ୍କା ?

ମାଝି ଖାଲି କାନ୍ଦିଲା, କିଛି କହିପାରିଲା ନାହିଁ ।

ବାବୁ କହିଲେ, "କାହିଁ, ଏଠାରେ କିଛି ମେଘ; ଅଳ୍ପ ତୋଫାନ ହୋଇଥିଲା ସତ; ତେତେଡ଼େ ତୋଫାନ ତ ନାହିଁ !"

---

୧ False point Light-house
୨ Life-boat

ମାଝି—ଆଜ୍ଞା, ଏଟା ତୋଫାନ ନୁହେଁ, ଦରିଆ ଖଣ୍ଡିଆ ଭୂତ, ଏପରି ଭୂତ ଦରିଆରେ ଥାନ୍ତି । କଲକତା ବଲ୍ଟିତ ରେଙ୍ଗୁଣି ଛ'ଖଣ୍ଡ ଜାହାଜ ଏକା ସାଙ୍ଗରେ ଶେଡ଼ ହାଙ୍କାରିଥିଲୁଁ । ସବୁଗୁଡ଼ାକ କୁଆଡ଼େ ଉଡ଼ିଗଲେ, କାହାରି ପତା ନାହିଁ ।

ଜ୍ୟୋତିଷ କମଳଲୋଚନ ନାୟକଙ୍କୁ ବାବୁ ଡ଼କାଇଥିଲେ । ମାଝି ସଙ୍ଗରେ କଥୋପକଥନ ସମୟରେ ଜ୍ୟୋତିଷ ପହଞ୍ଚିଗଲେ, ପଞ୍ଜି ବିଡ଼ାଟା ଧରି ପଢ଼ିବାକୁ ଲାଗିଲେ—

"ମଙ୍ଗଳଂ ଭଗବାନ୍ ବିଷ୍ଣୁ"

"ମଙ୍ଗ—

ବାବୁ ଗୋଟାଏ ଭାରି ଖପା ହୋଇ କହିଲେ, "ହିଁ ହିଁ, ତୁମେ ପାଞ୍ଜି ବିଡ଼ାବନ୍ଧ ରଖ । ଘରି ଦିନଟାଏ ଧରି ଦେଇଥିଲ, ନା ! ଗଲା ଗୁରୁବାର ଦିନ ଖଡ଼ି ପକାଇ କହିଥିଲ ପରା, ପୂର୍ଣ୍ଣିମା କଟାଳ ଜୁଆର ବେଳରେ କମଳାପ୍ରସାଦ ଘାଟ ଭିଡ଼ିବ ? ଆଜ୍ଞା ପାଠ ପଢ଼ୁଛ ଏକା ।"

ଶ୍ରୀ ନାୟକେ ଫଁ କରି ନିଶ୍ୱାସଟାଏ ପକାଇଲେ, ପାଟି ନ ଫିଟାଇ ଚଞ୍ଚମୁଖା ଦେଲେ । କଚେରିଘର ବାରନ୍ଦା ଏକପାଖିଆ ବସି ଅଣ୍ଟାରୁ ଖଡ଼ି ଗୋଟାକାଠି କାଢ଼ିଲେ, ଗଣିତଗନ୍ଧ କାଟି ଢ଼େର ପାଠ ଲେଖିଲେ । ଖଡ଼ି ଗୋଟାକଟା ଦୋରବସ୍ତ ଛୁଡ଼ିଗଲାଣି । ଚଉକିଉପରେ ଗୁମ୍ମାରି ବସି ତୁମ୍ଭ ହିବୁଚନ୍ତି । ବେଳ ପ୍ରାୟ ତିନି ପହର ଗଡ଼ିଗଲାଣି । ବାବୁ କଚେରିରୁ ଉଠି ନାହାନ୍ତି, ଗୁମାସ୍ତା ଆଉ ଆଉ ଚାକରମାନେ ବା କିମିତି ଉଠିଯିବେ ? ଗାଧିଆ ବେଳ ଗଡ଼ିଗଲାଣି । ସମସ୍ତେ ଆପଣା ଆପଣା ଜାଗାରେ ଗୁମ୍ ମାରି ବସିଛନ୍ତି । ଘର ଭିତରୁ ତିନି ଥର ଡାକରା ଆସିଲାଣି । ଶେଷରେ ଗୁରୁବାରି ପୋଇଲି ଆସି କହିଲା, "ସାଆନ୍ତାଣୀ ଆଜ୍ଞା କଲେ, ଯା ହେବାର ତ ହେଲାଣି, ଭିତରେ ପିଲାକୁଆଗୁଡ଼ାକ ଓପାସରେ କାଉଳା ହେଉଛନ୍ତି ଯେ !"

ବାବୁ ଯେଉଁ ବାଟରେ ଭିତର ପରସ୍ତକୁ ଯିବେ, ଅବଧାନେ ସେହି ବାଟ ପାଖରେ ବସିଥିଲେ, ବାବୁଙ୍କୁ ଦେଖି ଛିଡ଼ା ହୋଇ ଯାଇ କହିଲେ, "ଆଜ୍ଞା ! ଏ କପରି ହେଲା ?" ବାବୁ ଟିକିଏ ଖପା ହେଲା ପରି ହୋଇ କହିଲେ, "କପରି ହେଲା, ମାଝିକୁ ପଚାର ।"

ବାବୁ ଉଠନ୍ତେ ଉଠନ୍ତେ ଗୁମାସ୍ତାମାନେ ଖାତାପତ୍ର ବାନ୍ଧି ଘରକୁ ବାହାରିଲେ । ଶ୍ୟାମଦାସ ଗୁମାସ୍ତା ଜ୍ୟୋତିଷଙ୍କୁ ଟିକିଏ ଠାଟ୍ଟାଳିକରି କହିଲେ, "କି ହୋ ଅବଧାନେ ! ତୁମ ପାଠ ଛୁଟୁନାହିଁପରି ? ଯାଅ—ଯାଅ, ସ୍ନାନ ପ୍ରକାର କରିପକାଅ, ପାଠଟା ଉଠକରି ଛୁଡ଼ିଯିବ ।"

ଶ୍ରୀ ନାୟକେ କହିଲେ, "ଗୁମାସ୍ତା ବାବୁ, ଆପଣ ଖେଷ୍ଟାଙ୍ଗ କରିବେ ନାହିଁ, ଆପଣ ଟିକିଏ ମୋକଥା ଶୁଣନ୍ତୁ । ଏହି ଦେଖନ୍ତୁ ବାବୁଙ୍କର କକଡ଼ା ଲଗ୍ନ—ଲଗ୍ନରେ ବୃହସ୍ପତି, ବର୍ତ୍ତମାନ ପୁଣି ବୃହସ୍ପତି ମହାଦଶା ଏବଂ ଚଞ୍ଚାମାଧିପ ଲାଭାଧିପ ଯେ ମଙ୍ଗଳ ତାହାର ହୋଇଛନ୍ତି ଅନ୍ତର । ଆହୁରି ବ ଦେଖିବା ହେଉ, ଘରଆଡ଼େ ଠାକୁରାଣୀଙ୍କର ମେଷଲଗ୍ନ—ଦ୍ୱିତୀୟ ଧନ ସ୍ଥାନରେ ଚନ୍ଦ୍ର ତୁଙ୍ଗୀ, ତାହାର ପୁଣି ମହାଦଶା । କଣ ବୋଲନ୍ତି ଗୁମାସ୍ତାବାବୁ, ଏ ଅବସ୍ଥାରେ କି ବିପଦ ଘଟିପାରେ ? କେଭେଁ ନୁହେଁ — କେଭେଁ ନୁହେଁ, ଜାହାଜ କେଭେଁ ଡୁବିବ ନାହିଁ ।"

ଆମ୍ଭେମାନେ ଯେଉଁ ଘଟଣା ବିଷୟ ଲେଖିବାକୁ ବସିଅଛୁଁ, ତାହା ଷାଠିଏ ବର୍ଷତଳର କଥା । ସେ ସମୟରେ ବାଲେଶ୍ୱରର ଜାହାଜ କାରବାର ବିଷୟ ନ ଜାଣିଲେ ପ୍ରକୃତ ଘଟଣା ବିଷୟ ବୁଝିବାକୁ ପାଠକମାନଙ୍କ ପକ୍ଷରେ ବଡ଼ ଅସୁବିଧା ହେବ, ଅଥବା ମୂଳରୁ ବୁଝିପାରିବେ ନାହିଁ । ଏଥିକୁ ସେ ସମୟର ବୃତ୍ତାନ୍ତ ଅତି ସଂକ୍ଷେପରେ କିଞ୍ଚିତ୍ ବ୍ୟାଖ୍ୟାନ କରିବାକୁ ଇଚ୍ଛା କରୁଁ ।

ଭାରତବର୍ଷର ପୂର୍ବ ଉପକୂଳସ୍ଥ ବନ୍ଦରମାନଙ୍କ ମଧ୍ୟରେ ଅତି ପୂର୍ବ କାଳରୁ ବାଲେଶ୍ୱର ପ୍ରସିଦ୍ଧି ଲାଭ କରିଥିଲା । ସମୁଦ୍ରଗାମୀ ସହସ୍ରାଧିକ ଜାହାଜ ନଦୀଜଳକୁ ଆଚ୍ଛାଦନକରି ମଉସମ ସମୟରେ ବାଲେଶ୍ୱର ବନ୍ଦର ଘାଟରେ ଭାସୁଥିଲେ । ନାନା ଶ୍ରେଣୀର ପ୍ରାୟ ଦଶହଜାର କାରିଗର କାମରେ ଲାଗି-ଥାନ୍ତି । ସହର ପାଖିଆ ନଦୀକୂଳ ପ୍ରାୟ ଦୁଇକୋଶ ପର୍ଯ୍ୟନ୍ତ ହାଟ ବସିଲାପରି ଲୋକଙ୍କ ଗହଳ ଚହଳ ଲାଗିଥାଏ । ରେଙ୍ଗୁନ, ଜାଭା, ବଷ୍ଟିଓ, ବିଶାଖାପତ୍ତନ, ଚିନାପାଟନା, ସିଂହଳ, ମାଲଦ୍ୱୀପ, ଲକ୍ଷାଦ୍ୱୀପ ଅଭିମୁଖରେ ଯାଉଥିବା ଶତ ଶତ ଜାହାଜ ସମୁଦ୍ର ମଧ୍ୟରେ ହେରିଆ * ଖେଳୁଥିଲେ । ସେ ସମୟରେ ରେଲ ବା ଷ୍ଟିମରର ନାମ ଶୁଣା ନଥିଲା । ସମସ୍ତ ଉତ୍କଳର ବିଦେଶୀ ମାଲ ଆମଦାନୀ ରପ୍ତାନି ବାଲେଶ୍ୱର ବନ୍ଦର ବାଟେ ହେଉଥିଲା । ବଙ୍ଗଳା ଦେଶର

* ହେରିଆ—ଦକ୍ଷିଣକୁ ପବନ ଠେଲି ସର୍ପାକାରରେ ଜାହାଜର ଗଢ ।

ପ୍ରାୟ ଅର୍ଦ୍ଧାଂଶ ଜିଲ୍ଲା ଲୋକଙ୍କ ଖୋରାକୀ ଲୁଣ ବାଲେଶ୍ୱରୀ ଜାହାଜ ବହନ କରୁଥିଲେ । ବଙ୍ଗଦେଶ ନାମ ଜାଣିବା ପୂର୍ବରେ ପାଶ୍ଚାତ୍ୟ ଜାତି ଦିନାମାର, ଓଲନ୍ଦାଜ, ଫରାସୀ, ଇଂରେଜ ବେପାରୀମାନେ ବାଲେଶ୍ୱର ବନ୍ଦରରେ ଦୋକାନ ମେଲିଥିଲେ । ବର୍ତ୍ତମାନ ବନ୍ଦର ନଦୀଘାଟକୁ ଯାଅ, କଣ ଦେଖିବ ? ନଦୀକୂଳ ଶ୍ମଶାନ ପରି ନିର୍ଜନ — ବୁଢ଼ାବଳଙ୍ଗ ନଦୀଟି ଯେମନ୍ତ କଳକଳ ସ୍ୱନରେ କାନ୍ଦି ସମୁଦ୍ରକୁ ଯାଉଅଛି ।

ବାଲେଶ୍ୱର ବନ୍ଦରର ଦୁର୍ଭାଗ୍ୟର ମୂଳକାରଣ, ନିମକ ପୋକ୍ତାନ ବନ୍ଦ, ଦ୍ୱିତୀୟ କାରଣ ଷ୍ଟିମର ଓ ରେଲର କାରବାର, ତୃତୀୟ କାରଣ ଅଥବା ବିଶେଷ କାରଣ, ବାଲେଶ୍ୱର ନଦୀ ମୁହାଣ ପୋତା ପଡ଼ିଗଲାଣି, ଅମାବାସ୍ୟା ପୂର୍ଣ୍ଣିମା କଟାଳ ଜୁଆର ସମୟ ବିନା ଅନ୍ୟ ସମୟରେ ସମୁଦ୍ରରୁ ଜାହାଜ ନଦୀ ଭିତରକୁ ପଶି ପାରୁନାହିଁ ।

ବାଲେଶ୍ୱରୀ ଜାହାଜ ସବୁ ତିନି ଶ୍ରେଣୀର ଥିଲା । ବଡ଼ ଜାହାଜର ନାମ ଗୋରାପ, ମଧ୍ୟଭିଳ ଜାହାଜର ନାମ ସୁଲୁପ, ଅତି ସାନ ଜାହାଜର ନାମ ଦୁଉଣୀ । ସୁଲୁପ ଆଉ ଦୁଉଣୀ କଲିକତାକୁ ଯାତାୟାତ କରେ, ଗୋରାପ ସବୁ ସମୁଦ୍ର ମଧ୍ୟରେ ଦୂର ଦେଶକୁ ଯାଏ । ପ୍ରତ୍ୟେକ ଜାହାଜର ଗୋଟିଏ ଗୋଟିଏ ନାମ ଥାଏ, ଯଥା — କମଳାପ୍ରସାଦ, ଉମାପ୍ରସାଦ, ଦୁର୍ଗାପ୍ରସାଦ, ଈଶ୍ୱରୀପ୍ରସାଦ ଇତ୍ୟାଦି ।

ବାଲେଶ୍ୱରରେ ଅନେକଗୁଡ଼ିଏ ଜାହାଜିଆ ମହାଜନ ଥିଲେ । ଯାହାଙ୍କର ଜାହାଜ ସଂଖ୍ୟା ବେଶୀ, ସେ ବଡ଼ ମହାଜନ, ସମାଜରେ ତାଙ୍କର ସମ୍ମାନ ବେଶୀ ।

ବାବୁ ରାମଚନ୍ଦ୍ର ନାୟକ ଜଣେ ଛୁଟକୁରିଆ ମହାଜନ । ଚାରି ଖଣ୍ଡି ମାତ୍ର ଜାହାଜ । କମଳାପ୍ରସାଦ ଗୋରାପ ମାନ୍ଦ୍ରାଜ; କଲମ୍ବୋ, ରେଙ୍ଗୁନ କ୍ଷେପ କରେ, ଆଉ ତିନି ଖଣ୍ଡି ସୁଲୁପ ।

ସ୍ୱରୂପ ବେହେରା କମଳାପ୍ରସାଦ ଗୋରାପର ମାଝି । କୋଡ଼ିଏ ବର୍ଷର ଚାକର, ଖୁବ୍ ବିଶ୍ୱାସୀ, ଖୁବ୍ ନିମକସଚ୍ଚା । ଖୁବ୍ ବିଶ୍ୱାସୀ ଲୋକ ନହେଲେ ମାଝିଗିରି ଚାକର ପାଏ ନାହିଁ । କାରଣ, ତାହା ହାତ ବାଟେ ଅନେକ ନଗଦ ଟଙ୍କାର କାରବାର ହୁଏ ।

ସ୍ୱରୂପ ମାଝି କମଳା ପ୍ରସାଦ ଗୋଲାପଟରେ ମାଲ ବୋଝେଇ ମାଝି ନେଇ ଯାଇଥିଲା, ଫେରନ୍ତା ଜାହାଜ ବୁଡି ଯାଇଥିବା କଥିତ ହୁଏ । ଜାହାଜ ବୁଡି ଯିବାରୁ ମହାଜନଙ୍କ ଛଡ଼ା ଆହୁରି ଢେ଼ର ଲୋକଙ୍କର ଲୋକସାନ ହୋଇଛି । ଚିରକାଳ ଏପରି ଦସ୍ତୁର ଚଳି ଆସୁଛି କି; ମାଝି ଦୂର ଦେଶକୁ ମାଲ ବୋଝେଇ ଜାହାଜ ନେଇ ଯିବାବେଳେ ସେ ଜାହାଜର ଦୁଇ ଅଣା ବୋଝରେ ମାଲ ବିନା ଭଡାରେ ନେଇ ଯାଏ । ମନେ କରନ୍ତୁ, ଗୋଟିଏ ଜାହାଜରେ ଆଠ ହଜାର ମହଣ ମାଲ ବୋଝେଇ ହେବ, ସେଥିରୁ ହଜାରେ ମହଣ ମାଝିର । ସେହି ହଜାରେ ମହଣ ମାଲ ସକାଶେ ମହାଜନ ଜାହାଜ ଭଡା ପାଇବ ନାହିଁ, ସେ ବୋଝେଇ ମାଲର ବିକା କଣା ଲାଭ ମାଝି ପାଇବ । ମାଝିର ଦୁଇପଣି ମାଲ ନେବାର ଅଧିକାର ଅଛି ସତ୍ୟ, ମାତ୍ର ତା ହାତରେ ଏତେ ଟଙ୍କା କାହିଁ ? ବାବୁଙ୍କ ଘରେ ଚାକର ଚାକରାଣୀ, କୋଠ ମୈଅ, ଗୁମାସ୍ତା ନାଇକ ଯେତେ ଲୋକ ଥାନ୍ତି; ମାଝି ସେମାନଙ୍କ ପାଖରୁ ଟଙ୍କା ନିଏ । ଏହି ଟଙ୍କାକୁ ବଟମ ବୋଲାଯାଏ । ମାଝି ସେହି ବଟମ ଟଙ୍କାରେ ମାଲ କିଣି କାରବାର କରେ । ସେଥିରୁ ଯେଉଁ ଲାଭ ହୁଏ, ବଟମ ବାଲା ଅଧେ ଆଉ ମାଝି ଅଧେ ପାଏ । କମଳାପ୍ରସାଦ ଗୋଲାପଟରେ ଢେ଼ର ଟଙ୍କାର ବଟମୀ ମାଲ ଥିଲା ।

ଆଜ ପୂର୍ଣ୍ଣିମା— ସହଜରେ କଟାଳ ଜୁଆର ଦିନ । ବାରଟା ବେଳେ ଜୁଆର ଭାଙ୍ଗିବ, ଠିକ୍ ସେତିକି ବେଳେ ପଡ଼ୁଛି ଅମୃତ ଯୋଗ । ଆଜ ଢେ଼ର ଜାହାଜ ଗଡଯିବାର * ସ୍ଥିର ହୋଇଛି । ଗୁରୁ ପାଞ୍ଚ ଦିନ ହେଲା ମାଝି ଖଲାସୀମାନେ କାମରେ ଭିଡି ଲାଗି ଯାଇଥିଲେ । ଜାହାଜଟିକୁ ସଫା ସୁତୁରା କରି ଢୋ଼ଲ ଉପରେ ସବର, ଗଭର, ଟଭର—ପଞ୍ଚକୁ କଳମି ଢୋ଼ଲ ଆଉ ବରଗାମାନ ଟେକ ଦେଇ ଶେଉ ଗୁଡାଇ ଠିକ୍ କରି ରଖି ଦେଇଛନ୍ତି । ଆଗରେ ପଛରେ ଢୋଲର ସବା ଉପରେ ନାଲ ଧଳା ହଳଦିଆ ପତକାମାନ ଫର ଫର ହୋଇ ଉଡ଼ୁଛି । ଆଜିକୁ ଜାହାଜଟି ବଡ ସୁନ୍ଦର ଦିଶୁଛି । ବେଳ ପହରକ ସରିକି ଗୋଦ ବାବୁ ସ୍ନାନସାରି ଉପର ଯୋଡ ପିନ୍ଧି ଜାହାଜ ଉପରେ ପହଞ୍ଚିଲେ । ଜାହାଜ ଆଗ ମୁଣ୍ଡଠାରେ ହୋମ ଆଉ ପୂଜା ବସିଲା —ମାଝି ବି ସ୍ନାନ ପ୍ରକାର ସାରି ମୁଣ୍ଡରେ, ବେକରେ, ଦୁଇ ବାହୁଆଉ

* ସମୁଦ୍ରକୁ ଯାତ୍ରା କରି ଯିବାର ।

ଗୁଡ଼ିରେ ଚଟା କର ପୂଜା ପାଖରେ ବସିଥିଲ । ପୁରୋହିତ ପୂଜା ସାରି ବାବୁଙ୍କ ମୁଣ୍ଡରେ ଆଉ ମାଝି ମୁଣ୍ଡରେ ଅକ୍ଷତ ପକାଇ ବେକରେ ଫୁଲ-ମାଳ ଲମ୍ବାଇ ଦେଲେ । ପଣ୍ଡିତ ନରସିଂହ ମିଶ୍ର ଜାହାଜ କୁଶଳରେ ବାହୁଡି ଆସିବା ପାଇଁ ଚଣ୍ଡୀପାଠ ନମନ୍ତେ ବାବୁଙ୍କ ହାତରୁ ସଂକଳ୍ପ ଗୁଆ ଟେକିନେଇ ଫେରାଇ ଆସିଲେ । ମାଝି ଡ଼ାକ ଦେଲା, 'ତମ୍ବାରରହ' । ଖଲାସୀମାନେ ଆଉ ସୁକାଣି ଆପଣା ଆପଣା ଜାଗାରେ ଛିଡ଼ା ହୋଇଗଲେ । ଟଣ୍ଡେଲ ଆଗ ଲଙ୍ଗର କପିକଳକୁ ଅନାଇ, ଆଉ ଛ ଜଣ ଲଙ୍ଗର ଉଠା-ଦାଉରୁ କଳର ଛଅଟା ପଖା ଧରି ଛିଡ଼ା ହୋଇଛନ୍ତି ।

ବାବୁ, ପୁରୋହିତ, ଜ୍ୟୋତିଷେ ନଦୀକୂଳରେ ଜାହାଜକୁ ଅନାଇ ବସିଛନ୍ତି । ମାଝି ଜାହାଜ ବାଡ଼ ଉପରେ ପେଟେଇ ପଡ଼ି ବାବୁଙ୍କ ମୁହଁକୁ ଅନାଇଛି । ଜ୍ୟୋତିଷେ ସୂର୍ଯ୍ୟକୁ ଆଉ ପାଞ୍ଜିକୁ ବାରମ୍ବାର ଚାହୁଁଛନ୍ତି । ଠିକ ୧୨ ଟା ବେଳ ହେଲା । ବାବୁ ଆଉ ଜ୍ୟୋତିଷେ ଛିଡ଼ା ହୋଇ ଡ଼ାକଦେଲେ, "ମାଝି !"

ମାଝି ଜାହାଜ ଆଡକୁ ମୁହଁ କରି ଡ଼ାକଦେଲା, "ହା-ବସ୍ ।"

ଟଣ୍ଡେଲ ଡ଼ାକଲା —ଓ— ହୋଓ ।

ବାଉର ପାଖବାଡ଼ ଧରିଥିବା ଛ ଜଣ ଖଲାସୀ ଡ଼ାକିଲେ, ଓ ହୋଓ ।

ଟଣ୍ଡେଲ—ଓ—ହୋଓ ।
ଖଲାସୀ—ଓ—ଭାଇ ।
ଟଣ୍ଡେଲ—ଦରିଆ ପୀର ।
ଖଲାସୀମାନେ—ଏଁ—ୟୁଁ । ।
ଟଣ୍ଡେଲ—ଲାଗେ ଶିର ।
ଖଲାସୀ—ଏଁ—ୟୁଁ । ।
ଟଣ୍ଡେଲ—ପୀର କେରାମତ୍ !
ଖଲାସୀ—ଏଁ—ୟୁଁ । ।
ଟଣ୍ଡେଲ—ସାହେବ ସଲାମତ୍ !
ଖଲାସୀ—ଏଁ—ୟୁଁ । ।

ଟଣ୍ଡେଲ—ଜୁଆନ ଜଙ୍ଗର୍ ।
ଖଲାସୀ—ଏଁ—ଯୁଁ । ।
ଟଣ୍ଡେଲ – କାମେ ଖବର ।
ଖଲାସୀ—ଏଁ—ଯୁଁ । ।

ଟଣ୍ଡେଲ ଡାକିଲେ ଖଲାସୀମାନେ 'ଏଁ—ଯୁଁ ।' କହି ଏକ ସଙ୍ଗରେ ଖୁବ୍ ବଳରେ ବାଉର ଯନ୍ତ୍ର ପଖା ବାଡ଼ରେ ଏକ ଝିଙ୍କା ମାରନ୍ତି—ଲଙ୍ଗର ପାଣି ଭିତରୁ ଟିକଏ ଉଠି ଆସେ ।

ଟଣ୍ଡେଲ ପାଟି କରି ଡାକିଦେଲା, "ଏରିଆ—ଏରିଆ—ଏରିଆ !" ଲଙ୍ଗର ଉଠିଗଲା—ଭଟା ପାଣିରେ ଜାହାଜ ଖୁବ୍ ଧୀରେ ଧୀରେ ଗଡିକଲା ।

ଠିକ୍ ଏତିକିବେଳେ ନଦୀକୂଳରେ ଭାରି ଗୋଟାଏ ଚହଳ ପଡ଼ିଗଲା । ଦରିଆରୁ ଗୋଟାଏ ବଡ଼ ଜାହାଜ ଭାସି ଆସୁଛି, ସେଥିରେ କେହି ମଣିଷ ନାହିଁ । 'ସମ୍ଭାଳ – ସମ୍ଭାଳ'—ଲଙ୍ଗରା ଜାହାଜମାନଙ୍କରେ ମଣିଷ ପହରା ରହିଗଲେ । ସେ ଜାହାଜ ଭାସି ଆସି ଆଉ ଗୋଟାଏ ଜାହାଜ ଉପରେ ପଡ଼ିଗଲେ ଦୁଇ ଜାହାଜ ଜଖମ ହୋଇଯିବ । ଗୃହଖଣ୍ଡ ବଡାଳରେ ଛ ଛ ଜଣ ଖଲାସୀ ବସି ଧାଇଁଲେ, ଭସାଣି ଜାହାଜଟାକୁ ବାଟରେ ଓଗାଳି ରଖିବେ ।

ଜାହାଜ ନଦୀ ବାଟରେ ଧରାଗଲା । ଦେଖ ଦେଖ, କାହା ଜାହାଜ ? ଆରେ ଏଇଟା ତ ରାମହରି ବାବୁଙ୍କ କମଳାପ୍ରସାଦ । ରାମହରି ବାବୁ ଖବର ପାଇ ଠାଁ ଜାଗାରୁ ଉଠି ଲଣ୍ଡଭଣ୍ଡ ହୋଇ ଧାଇଁଛନ୍ତି, କଣ୍ଠୁ ଫିଟି ଗଲାଣି, କେଜାଣି ଲୁଗାଖଣ୍ଡ ଖସିପଡ଼ିବ । ରାମ ଭଣ୍ଡାରୀ ଟୋକା ସାଙ୍ଗରେ ନ ଥିଲେ ନିଶ୍ଚୟ ଲୁଗାଖଣ୍ଡ ବାଟରେ ପଡ଼ି ଯାଇଥାନ୍ତା । ଦେଖ, ଦେଖ—ଜାହାଜରେ ସବୁ ଠିକ୍‌ଠାକ ଅଛି, ନାହିଁ କେବଳ ବାବୁଙ୍କ ଟଙ୍କାଗୁଡ଼ିକ, ଆଉ ମାଝି ଖଲାସୀଙ୍କ ଆସବାବ । କାହିଁଗଲା ସ୍ୱରୂପ ମାଝି ? ଆରେ ଆଉ ମାଝି ! ମାଝି ଅନ୍ତର୍ଦ୍ଧାନ ।

ଘାଟ କପ୍ତାନ ସାହେବଙ୍କ ପାଖରୁ ଚିଠି ପାଇ ମେଜେଷ୍ଟର ସାହେବ ପୋଲିସ ନିଯୁକ୍ତ କଲେ । ଆଠ ଦଶ ଦିନ ବାଦେ ଦେଖାଗଲା ବାଲେଶ୍ୱର ସହର ଶଗଡ଼ ଦାଣ୍ଡରେ ପୋଲିସ ଦାରୋଗା ପୋଷାକ ପିନ୍ଧି ଗୋଟାଏ

ଘୋଡ଼ାରେ ଚଢ଼ି ଭାରି ଫୁର୍ତ୍ତିରେ କଚେରୀମୁହାଁ ଚାଲିଛନ୍ତି । ତାଙ୍କ ପଛରେ ମାଝି ଖଲାସୀ ତଣ୍ଡେଲ ମେଟ୍ ଜାହାଜର ଚାକର ଷୋଳ ଜଣ ହଳକୁ ହଳ ବାହାକୁ ବାହା ଛନ୍ଦା । ଜଣ ଚାଳିଶ ପଞ୍ଚାଶ ଚପରାସି ଚୌକିଦାର ତାଙ୍କ ଚାରି ପାଖ ବେଢ଼ି ଚାଲିଛନ୍ତି । ସମସ୍ତଙ୍କ ମୁଣ୍ଡରେ ଛ'ଟା ଟଙ୍କା ଭାର । ପୋଲିସ ପହଞ୍ଚିବାରୁ ମାଝି ଖଲାସୀମାନେ ମହାଜନର ଯେଉଁ ଟଙ୍କା ବାଣ୍ଟି ବଖରା କରି ନେଇଥିଲେ, 'ସୁନାପୁଅ ପରି ସେ ସମସ୍ତ ଦାରୋଗା ଆଗରେ ଗଣି ଦେଇଥିଲେ ।

ପୋଲିସ ଦାରୋଗା ମେଜେଷ୍ଟର ସାହେବଙ୍କଠାରେ ଯେଉଁ ରିପୋର୍ଟ ଦରପେସ କରିଥିଲେ, ସେଥିର ସାରାଂଶ ଏହି ପ୍ରକାର —

"ଗତ ମଲ ମାସ ୧ ତାରିଖ ସ୍ୱରୂପ ମାଝି ମାନ୍ଦ୍ରାଜ ହାରବାରରୁ କମଳାପ୍ରସାଦ ଗୋରାପକୁ ବାଲେଶ୍ୱର ବନ୍ଦରକୁ ଘେନି ଆସୁଥିଲା— ୯ ତାରିଖ ସନ୍ଧ୍ୟା ସମୟରେ ଧାମରା ନଦୀ ମୁହାଣ ପାଖରେ ପହଞ୍ଚିଲା । ସେହି ଶେଷ ରାତି ସରିକି ବାଲେଶ୍ୱର ବାରରେ ପହଞ୍ଚିଥାନ୍ତା । ମାତ୍ର ଆକାଶ ମେଘାଚ୍ଛନ୍ନ, ଆଉ ଅଳ୍ପ ଅଳ୍ପ ତୋଫାନ ହେବାରୁ ମାଝି ସମୁଦ୍ର ମଧ୍ୟରେ ଜାହାଜ ଚଳାଇବାକୁ ସାହସ କଲା ନାହିଁ, ନିରାପଦରେ ରହିବାପାଇଁ ଘଡ଼ିଆମାଳ ନଦୀ ଭିତରକୁ ଘେନିଯାଇ ଲଙ୍ଗର ପକାଇଲା । ସେଠାକୁ ମାଝି ଖଲାସୀ ସମସ୍ତଙ୍କ ଗ୍ରାମ ମହାମପୁର ଅଧ କୋଶେ ବାଟ ଦୂର । ଅନେକ ଦିନ ପିଲାଝିଲାଙ୍କୁ ଦେଖି ନ ଥିବାରୁ ଘରକୁ ଯିବାପାଇଁ ସମସ୍ତେ ବଡ଼ ବ୍ୟସ୍ତ ହେଲେ । ଚାରିଜଣ ମାତ୍ର ଖଲାସୀ ଜାହାଜରେ ପହରା ରହିଲେ, ଆଉ ସମସ୍ତେ ଓହ୍ଲାଇ ଘରକୁ ଚାଲିଗଲେ । ରାତି ପାହାନ୍ତି ଖୁବ୍ ଭୋର ଭୋର ଜାହାଜକୁ ଫେରିଆସିବାର କଥା ରହିଲା ।"

"ଅଧରାତି ସରିକି ତୋଫାନ ଆଉ ବୃଷ୍ଟି ପ୍ରବଳ ହେଲା । ଚାରିଜଣ ଲୋକ ଜାହାଜ ସମ୍ଭାଳି ରଖି ପାରିଲେ ନାହିଁ, ଗୋଟାଏ ବାଲି ଚଡ଼ାରେ ଲାଗିଗଲା । ସକାଳ ସକାଳ ମାଝି ଖଲାସୀ ଧାଇଁଛନ୍ତି--ଜାହାଜ ଅବସ୍ଥା ଦେଖି ମୁଣ୍ଡ ବାଡ଼େଇ ହେଲେ । ତେତେବେଳେ ପଡ଼ିଆଣି ଜୁଆର, ଜାହାଜ ନିହାତି ବାଲିଚଡ଼ାରେ ବସିଯାଇଛି । ଆଉ ଉପାୟ ନାହିଁ । ଘଡ଼ିଆମାଳ ନଦୀଟା ଅତି ଭୟଙ୍କର, ଜାହାଜ ଚଡ଼ାରେ ଲାଗିଲେ ଉଠେ ନାହିଁ । ଢେର ଢେର ଜାହାଜ ମାଡ଼ ଖାଇଛନ୍ତି । ମାଝିମାନେ ଏ ନଦୀକୁ ବଡ଼ ଡରନ୍ତି ।

ମାଝି ଖଲାସୀ ସମସ୍ତେ ବସି ବିଚାର କଲେ, ଜାହାଜ ତ ଗଲାଣି, ଶୁକର ତ ରକ୍ଷା ନାହିଁ, ଶୁଣାଶୁଣିରେ ଜାହାଜାଡ଼ି କାରବାର ବାଲେଶ୍ୱରରୁ ଉଠିଯିବ । ସ୍ଥିର କଲେ, ଟଙ୍କାଗୁଡ଼ିକ ବାନ୍ଧିନେଇ ଦେଶାନ୍ତରରେ ରହିବେ, ଜାହାଜ ଡୁବି ଖବର ମହାଜନଙ୍କୁ ଦେବେ । ମାତ୍ର ସେମାନେ ଯତ୍ନ କରି-ଥିଲେ ଜାହାଜ ଉଠିଥାନ୍ତା ଇତ୍ୟାଦି ।

ଶୁକ ଛ'ଦିନ ବାଦେ ପୂର୍ଣ୍ଣିମା ତିଥି କଟାଳ ଜୁଆର ପହଞ୍ଚିବାରୁ ଜାହାଜ ଯେଉଁ ଚଡ଼ାରେ ବସିଥିଲା, ତାହା ଜଳପୂର୍ଣ୍ଣ ହୋଇଗଲା । ଦୈବାତ୍ ଗୋଟାଏ ଟାଣ ପବନ ହେବାରୁ ଜାହାଜ ଭାସିଉଠି ଜଳ ସ୍ରୋତରେ ଏକାବେଳକେ ଦରିଆରେ ପଡ଼ିଲା । ଯେପରି ଭାବରେ ଭାସି ଯାଉଥିଲା, ଗଙ୍ଗା ନଦୀ ଭିତରକୁ ଯାଇଥାନ୍ତା । ମାତ୍ର ବାଲେଶ୍ୱର ବାର ବାହାର ବୟା *ପାଖରେ ପହଞ୍ଚିଛି, ପୂର୍ଣ୍ଣିମା ପ୍ରାତଃକାଳ, ସମୁଦ୍ରରେ ଜୁଆର ଆରମ୍ଭ ହୋଇଛି, ଜଳସ୍ରୋତ ଧରି ବାଲେଶ୍ୱର ବୁଢ଼ାବଳଙ୍ଗ ନଦୀ ଭିତରେ ପଶିଗଲା ।

ପଶ୍ଚାତ୍ ଶୁଣାଗଲା, ମାଝି ଖଲାସୀମାନେ ଶୁକ ଶୁକ ଦରଷ ମିଆଦ ଗଲେ । ଆଉ ଜ୍ୟୋତିଷ କମଳଲୋଚନ ନାୟକେ ତେଡ଼େ ବଡ଼ ଖିରା କାଳରେ ପାଟପଥା ପିନ୍ଧି ଯୋଡ଼ ଶାଲ୍ ଘୋଡ଼ି ହୋଇ, ହାତରେ ସୁନାବଳା ନାଇ ମାସେଯାଏ ସହର ମଧ୍ୟରେ ସବୁ ବଡ଼ ଲୋକଙ୍କ ଦ୍ୱାରେ ବୁଲୁଥିବାର ଦେଖାଗଲା ।

———

* ଦରିଆ ମଧ୍ୟରେ ମାର୍ଗରେ ସାଙ୍କେତିକ ଚିହ୍ନ ।

# ମୌନୀ ମୌନୀ

ପ୍ରାୟ ଅର୍ଦ୍ଧଶତ ବର୍ଷ ପୂର୍ବେ ଖଣ୍ଡଗିରି ଓ ତତ୍‌ସଂଲଗ୍ନ ଉପତ୍ୟକା ଭୂମି ବିବିଧ ଜାତୀୟ ବୃକ୍ଷ ଓ ଲତା ଜାଲରେ ବେଷ୍ଟିତଥିଲା । କେବଳ ଗୁମ୍ଫା ଓ ସମୀପବର୍ତ୍ତୀ ସ୍ଥାନ ଉଦ୍ଭିଦଶୂନ୍ୟ, ପରିଷ୍କୃତ ପରିଚ୍ଛନ୍ନ, ସାଧୁ ସନ୍ନ୍ୟାସୀ-ମାନଙ୍କ ଆଶ୍ରମରେ ପରିପୂର୍ଣ୍ଣ । ବିଭୂତିଭୂଷଣ କୌପୀନଧାରୀ ସାଧୁମାନେ ଧୂନି ଲଗାଇ ବସିଥାନ୍ତି, ବସ୍ତ୍ରଧାରୀ ସାଧୁମାନେ ନିର୍ଦ୍ଧନିକ । ସାଧୁ ନାନା ଶ୍ରେଣୀର— ସନ୍ନ୍ୟାସୀ, ନାଗା, ରାମାଉତ, କେହି ବା ଉପାଧିରହିତ । ପ୍ରାୟ ପ୍ରତିଦିନ ସାଧୁମାନଙ୍କ ଗତାୟାତ ଲାଗିଥାଏ । ଥୋକେ ଚାଲିଗଲେ ମାତ୍ରେ ନବାଗତ ସାଧୁମାନେ ଶୂନ୍ୟସ୍ଥାନ ଅଧିକାର କରି ବସୁଥାନ୍ତି । ମୁଦ୍ରିତନେତ୍ର ଥୋକେ ସାଧୁ ଧ୍ୟାନନିମଗ୍ନ । ତୁଳସୀ ବା ରୁଦ୍ରାକ୍ଷମାଳାହସ୍ତ ଥୋକେ ଭଜନରେ ନିଯୁକ୍ତ । କେହି ଗ୍ରନ୍ଥପାଠ, କେହି ବା ଗ୍ରନ୍ଥ ଶ୍ରବଣ କରୁଅଛନ୍ତି । କେହି ଗଞ୍ଜିକା ଚିପ୍ପନ ସେବନରେ ନିଯୁକ୍ତ । କେହି କେହି ସାଧୁ ଗଛମୂଳଟିରେ ପୁଷ୍ପମଣ୍ଡିତ ଦେବତା ବିରାଜ କରାଇଦେଇ ତୀର୍ଥଯାତ୍ରୀମାନଙ୍କଠାରୁ ଅର୍ଥ ସଂଗ୍ରହରେ ମନୋଯୋଗୀ । ବାସ୍ତବରେ ଏହା ଗୋଟିଏ ବିଚିତ୍ର ଦୃଶ୍ୟ । ଏହି ପବିତ୍ରସ୍ଥାନ ଦର୍ଶନକଲେ ନିତାନ୍ତ ପାଷାଣ ହୃଦୟ ମଧ୍ୟ ଭକ୍ତିରସରେ ଆପ୍ଲୁତ ହୋଇଯାଏ ।

କେବେ କେବେ ଜମାଉତ ଦଳର ମଧ୍ୟ ଏ ସ୍ଥାନକୁ ଶୁଭାଗମନ ହୋଇଥାଏ । ଏମାନେ କିନ୍ତୁ ଗୁମ୍ଫା ନିକଟକୁ ଯାନ୍ତିନାହିଁ । ଖଣ୍ଡଗିରି ପାଦ ଦେଶରେ ଦୁଇଚାରି ଧୂନି ସ୍ଥାପନକରି ଅବସ୍ଥାନ କରନ୍ତି । ଜମାଉତ ଦଳର ସନ୍ନ୍ୟାସୀ ସଂଖ୍ୟା ପ୍ରାୟ ପଞ୍ଚାଶଠାରୁ ହଜାରେ ବାରଶ ପର୍ଯ୍ୟନ୍ତ । ସନ୍ନ୍ୟାସୀ-ମାନଙ୍କ ସାମାନ ବହିବା ନିମନ୍ତେ ଓଟ ଓ ଘୋଡା ଥାନ୍ତି । କଦାଚିତ୍ ହାତୀର ମଧ୍ୟ ଅଭାବ ନଥାଏ । ଗାଈ, ବୃଷଭ ମଧ୍ୟ କାହାରି କାହାରି ଦଳରେ ଥିବାର ଦେଖାଯାଏ । ଜମାଉତର ଅଧିକାରୀଙ୍କର ଉପାଧି ମହନ୍ତ ବାବା । ଏହି ମହନ୍ତ ବାବାଙ୍କ ଆଜ୍ଞାରେ ଜମାଉତ ଚାଲେ । ଜଣେ କୋଠାରୀ ଓ ଜଣେ ଭଣ୍ଡାରୀ

ଥାଏ । କୋଠାଘର ଧନ ରକ୍ଷକ, ଭଣ୍ଡାରଘର କ୍ରମାରେ ଖାଦ୍ୟ ଓ ଅନ୍ୟାନ୍ୟ ଦ୍ରବ୍ୟ ଥାଏ । ଅଧିକାଂଶ ଜମାଉତ ନିଯୁକ୍ତ ଯାଯାବର, ଭାରତର ସର୍ବତ୍ର ଭ୍ରମଣ କରି ରାଜା, ଜମିଦାର ଓ ଧନବନ୍ତ ଲୋକମାନଙ୍କଠାରୁ ଅର୍ଥ ସଂଗ୍ରହରେ ନିଯୁକ୍ତ ଥାନ୍ତି । ସଞ୍ଚିତ ଅର୍ଥ ବୃତ୍ତି ଛ ମାସକୁ ଥରେ ସନ୍ନ୍ୟାସୀମାନଙ୍କ ମଧ୍ୟରେ ବଣ୍ଟନ କରାଯାଏ । ଅବଶ୍ୟ ମହନ୍ତ ବାବାଙ୍କ ଭାଗରେ ଅଧିକାଂଶ ପଡ଼ଥାଏ । ସନ୍ନ୍ୟାସୀମାନଙ୍କୁ ଏକତ୍ର ଆବଦ୍ଧ କରି ରଖିବାର ଏହା ଗୋଟିଏ ଉପାୟ ଅଟେ । ଅନେକ ଜମାଉତମାନଙ୍କର ସ୍ଥାନେ ସ୍ଥାନେ ମଠ ଓ ବିପୁଳ ଭୂସମ୍ପତ୍ତି ଅଛି, କେହି କେହି ମହାଜନୀ ମଧ୍ୟ କରିଥାନ୍ତି । ମଫସଲ ଗ୍ରାମମାନଙ୍କରେ ଏମାନଙ୍କର ଭୟଙ୍କର ଜୁଲମ ଥିଲା । ଜମାଉତର ଶୁଭାଗମନ ହେଲେ ଗ୍ରାମବାସୀମାନେ ବ୍ୟତିବ୍ୟସ୍ତ ହୋଇ ପଡ଼ନ୍ତି । ଭେଦାଭେଦ ସାଧୁମାନଙ୍କର ଟହଲ ଚଳାଇବାକୁ ହୁଏ । ଜମାଉତଙ୍କ ସାଧୁହେବା ରାଜବଜେବଶେଷ । ଧୂନି ସକାଶେ ଉପଯୁକ୍ତ ଗଡ଼ କାଠ ସଂଗୃହୀତ ନ ହେଲେ ଗରିବ ପ୍ରଜାମାନଙ୍କ ଘରର ଖୁମ୍ବ, ଫେଣୀ ଲୁଣ୍ଠିତ ହେଉଥିଲା । ଗ୍ରାମରେ ଜମାଉତ ବିଜେ ହେବା ମାତ୍ରକେ ପ୍ରଥମେ ବାଲଭୋଗ, ସାଧୁଙ୍କ ଗଞ୍ଜେଇ ଖର୍ଚ୍ଚ ଓ ଦେବତାଦର୍ଶନୀ ଦେବାର ନିୟମ । କେହି ବଡ଼ଲୋକ ବା ରାଜା ପ୍ରଥମେ ଉପଯୁକ୍ତ ରୂପେ ଦେବତାଙ୍କଠାରେ ଭେଟି ଦାଖଲ ନ କଲେ ସାଧୁମାନେ ଦୁଇ ତିନ ଦିବସ ପର୍ଯ୍ୟନ୍ତ ଉପବାସର ପଡ଼ି ରହନ୍ତି । ପ୍ରକୃତରେ ଉପବାସରେ ରହନ୍ତି, କି ନାହିଁ ଲୋକନେତ୍ରରେ ଅଗୋଚର । ସଙ୍ଗରେ ଜମା ଥିବା ମଇଦା ରାତି ଯୋଗେ ଧୂନିରେ ପଡ଼ି ପୋଡପିଠାରେ ପରିଣତ ହୁଏ । ଧର୍ମପ୍ରାଣ ନିରୀହ ଗ୍ରାମବାସୀ ହିନ୍ଦୁ ପ୍ରଜାମାନେ ନୀରବରେ ସମସ୍ତ ସହ୍ୟ କରୁଥିଲେ । ପ୍ରକୃତ ସାଧୁ ଜମାଉତର ମଧ୍ୟ ଅଭାବ ନ ଥିଲା; ମାତ୍ର ବ୍ୟବସାୟୀ ଅଧିକାଂଶ । ବଙ୍ଗଳାରେ ଡକାଇତ, ପୂର୍ବ ସମୁଦ୍ରଠାରୁ ଦିଲ୍ଲୀ ପ୍ରାଚୀର ପର୍ଯ୍ୟନ୍ତ ସମସ୍ତ ଆର୍ଯ୍ୟାବର୍ତ୍ତରେ ଲୁଣ୍ଠନକାରୀ ପିଣ୍ଡାରୀ ଏବଂ ସମସ୍ତ ଭାରତବ୍ୟାପୀ ନାଗା ଜମାଉତଙ୍କ ଉତ୍ପାତରେ ପ୍ରଜାମଣ୍ଡଳୀ ନିତାନ୍ତ ଉତ୍ତ୍ୟକ୍ତ ହୋଇ ପଡ଼ୁଥିଲେ । ଧନ୍ୟ ଇଂରେଜ ଗଭର୍ଣ୍ଣମେଣ୍ଟ ! ସେମାନଙ୍କ ହସ୍ତରୁ ରକ୍ଷା କରିଅଛନ୍ତି ।

ଖଣ୍ଡଗିରିବାସୀ ସାଧୁମାନେ ପ୍ରାତଃସ୍ନାୟୀ । ପ୍ରାତଃକାଳରେ ଦେବତାଙ୍କ ଠାରେ ଯେଉଁ ବାଲଭୋଗ ଲାଗେ, ତାହା ସେବା କରି ଭଜନ ପୂଜନରେ ନିଯୁକ୍ତ ହୁଅନ୍ତି । ଅପରାହ୍ଣ ସମୟରେ ଥରେ ମାତ୍ର ପଙ୍ଗତ ହୁଏ । ସନ୍ଧ୍ୟା ଆଳତି ସମୟରେ ଘଣ୍ଟା ଭେରୀ ତୁରୀରେ ଖଣ୍ଡଗିରି କମ୍ପିତ

ହୋଇଉଠେ । ଆଳତି ଉତ୍ସବରେ ରାତି ପ୍ରହରକ ପର୍ଯ୍ୟନ୍ତ ଭଜନ – କାହ୍ନି ବା ଖଞ୍ଜଣୀବାଦନ, ଚଞ୍ଜିକାସେବନ ଇତ୍ୟାଦି । ତଦନନ୍ତର ଗିରି ନିସ୍ତବ୍ଧ ।

ବର୍ଣ୍ଣିତ ସମୟରେ ଖଣ୍ଡଗିରିରେ ଯେଉଁ ସମସ୍ତ ସାଧୁ ସନ୍ନ୍ୟାସୀ ବାସ କରୁଥିଲେ, ସେଥିମଧ୍ୟରୁ ଗୋଟିଏ ଦଳର ବିଷୟ ଉଲ୍ଲେଖଯୋଗ୍ୟ । ହାତିଗୁମ୍ଫା ସମ୍ମୁଖରେ ଏହି ଦଳର ମହନ୍ତ ମହାରାଜ ଧୂନି ଥାପି ବସିଛନ୍ତି । ଧୂନିର ଉପରିସ୍ଥ ବଗର କିଞ୍ଚିତ୍ ଦୂରରେ ଗୋଟିଏ କ୍ଷୁଦ୍ର ସିଂହାସନରେ ମହନ୍ତଙ୍କ ସମ୍ମୁଖରେ ମହାବୀରଜୀ ଦେବତା ବିରାଜିତ । ଦେବତାଙ୍କ ଅଳଙ୍କାର ତୈଜସପତ୍ରାଦି ଆଡ଼ମ୍ବରଯୁକ୍ତ । ପ୍ରତିଦିନ ପ୍ରାତଃକାଳରେ ଦେବତାଙ୍କ-ଠାରେ ମୋହନଭୋଗ, ବାଳଭୋଗ ଓ ଧାପ୍ୟାହ୍ନ ସମୟରେ ପକ୍କମାଲ ଅର୍ଥାତ୍ ପୁରି, କଚୁରି, ଖିରି, ଖେଚୁଡ଼ୀ ଭୋଗ ଲାଗେ । ଦେବତାଙ୍କ ସେବାରେ ଏତେ ବ୍ୟୟ, ମାତ୍ର କାହାରିକୁ କିଛି ଯାଚ୍ଞା ନାହିଁ, ମହାବୀର ମହାପ୍ରଭୁଙ୍କ ମହାମହିମା ବଳରେ ସବୁ ଚଳିଯାଏ । ମହନ୍ତ ମହାରାଜ ନିତାନ୍ତ ନିର୍ଲୋଭ, କେହି ଭକ୍ତ ଦେବତାଙ୍କୁ କିଛି ପ୍ରଣାମୀ ଦେଲେ ଟଙ୍କା ପଇସା ସେହିଠାରେ ପଡ଼ି ରହିଥାଏ, ମହନ୍ତ ମହାରାଜ ଥରେ ସୁଦ୍ଧା ଗ୍ରହାନ୍ତି ନାହିଁ । ସାଧାରଣରେ ପ୍ରକାଶ ଯେ, ଦୈନିକ ଦେବସେବାରେ ଉପଯୁକ୍ତ ବ୍ୟୟ ସକାଶେ ମହନ୍ତଙ୍କ ଧୂନିରୁ ସୁନା ବା ରୂପା ବାହାରିଥାଏ । ବାହାରର ବିଶ୍ୱାସୀ କେହି କେହି ଭକ୍ତ ଏହା ପ୍ରତ୍ୟକ୍ଷ ଦେଖିଅଛନ୍ତି । ଭୁବନେଶ୍ୱର ପ୍ରଭୃତି ସ୍ଥାନରୁ ବଣିଆମାନେ ଯାଇ ତାହା କିଣି ଆଣନ୍ତି । କଣାବିକା ବେଳେ ଦରଦାମ ନାହିଁ । ସାଧୁଲୋକ କି କଷାକଷି ଦରଦାମ କରିବେ ? କେବଳ ମହନ୍ତ ବାବା ଏତିକି କଥାବୋଲି କହିଥାନ୍ତି, "ଦେଓତକା ମାଲ, ଦେଓ ଦିଆ । ଦେଓତକା ସେବା, ତୁମାରି ଧରମ ।" ବଣିଆ ରି ଯାହାଇଚ୍ଛା ଦେଇ ସୁନା ରୂପା ନେଇଯାଏ । ଏକଥା ମଧ୍ୟ ଶୁଣାଅଛି, ପ୍ରତିଦିନ ଧୂନିରୁ ଯାହା ବାହାରିବ, ପ୍ରତିଦିନ ବ୍ୟୟ କରିବାକୁ ହେବ, ବାସି ରହିଲେ ଆଉ ବାହାରିବ ନାହିଁ । ମହାବୀରଙ୍କା ଏସା ହୁକୁମ । ବ୍ୟୟ ଉଣା ନୁହେ--କେବଳ ଗଞ୍ଜେଇ ପ୍ରତିଦିନ ଅଧସେର ଆଉ ସେଥିର ଉପଯୁକ୍ତ ଧୂଆଁ ପତ୍ର ! ପ୍ରସାଦ ସେବା ନିମନ୍ତେ ଅନେକ ଗାଉଁଲି ଜୁଟନ୍ତି ହୁଅନ୍ତି । ମହନ୍ତ ବାବାଙ୍କ ଆସନ ପାଖରେ କଦାଚିତ୍ ରାତିରେ ବୋତଲ (କାଚକୁମ୍ପା) ଦେଖାଯାଏ । ସେଥିରେ ଗଙ୍ଗାଜଳ ଆସିଥାଏ । ସନ୍ଧ୍ୟା ଆଳତି ଉତ୍ସବରେ ମହନ୍ତ ବାବା ଓ ଚେଲାମାନେ କିଞ୍ଚିତ୍ କିଞ୍ଚିତ୍ ଗଙ୍ଗୋଦକ ସେବା କରନ୍ତି । ଗୋଟାଏ ବଡ଼

ଗୁମ୍ଫାରେ ସାଧୁମାନଙ୍କ ସାମାନ ପୂର୍ଣ୍ଣ ଥାଏ । ସ୍ୱୟଂ ମହନ୍ତ ଓ ତାହାଙ୍କ ବିଶ୍ୱାସୀ ଦୁଇଜଣ ଚେଲା ଛଡ଼ା ସେ ଗୁମ୍ଫା ମଧ୍ୟକୁ ଯିବାର ଅନ୍ୟ କାହାର ଅଧିକାର ନାହିଁ ।

ମହନ୍ତ ବାବାଙ୍କ ନାମ ମାହାବୀର ଦାସ—ଦୀର୍ଘାକୃତି, ବ୍ୟାୟାମ-ସାଧିତ ପ୍ରାପ୍ତ ମାଂସପେଶୀ ସୁଦୃଢ଼, ବଳିବର୍ଦ୍ଧବତ୍ ବଳିଷ୍ଠ । ମସ୍ତକରେ ଦୀର୍ଘାକାର ଜଟାଭାର ଅଜଗର ଶିଶୁବତ୍ କୁଣ୍ଡଳୀକୃତ ଓ ବେଣୀଦ୍ୱାରା ସୁଦୃଢ଼ରୂପେ ଆବଦ୍ଧ । ଶ୍ମଶ୍ରୁ ଓ ନଖ ମାନ୍ତା ଅନୁପାତରେ ଦୀର୍ଘାକାର ନୁହେ । ଦେହର ବର୍ଣ୍ଣ ବୋଲିଯାଇ ନପାରେ,କାରଣ ସ୍ଥୂଳରୂପେ ବିଭୂତିମଣ୍ଡିତ । ନେତ୍ର ଗଞ୍ଜିକା ଧୂମରେ ଜବାକୁସୁମସଙ୍କାଶ ରକ୍ତବର୍ଣ୍ଣ ଏବଂ ଚଞ୍ଚଳ । ଦୃଷ୍ଟି ନିତାନ୍ତ ତୀବ୍ର ଓ ଭୟପ୍ରଦ । କେହି ନବାଗତ ଯାତ୍ରୀ ବା ଭକ୍ତ ଉପସ୍ଥିତ ହେଲେ ତାହାକୁ ତୀବ୍ର ଦୃଷ୍ଟିରେ ଆପାଦମସ୍ତକ ନିରୀକ୍ଷଣ କରିଥାନ୍ତି । ସର୍ପ-ବେଷ୍ଟିତ ଅର୍ଦ୍ଧହସ୍ତ ପରିମିତ ଗଞ୍ଜେଇ ଚିଲମଟାଏ ମହନ୍ତଙ୍କ ହସ୍ତରେ ସର୍ବଦା ଶୋଭା ପାଉଥାଏ । ମହନ୍ତବାବାଙ୍କ ବୟସ ଅନୁମାନରେ ପଞ୍ଚାଶ ଲଗାଲଗି; ମାତ୍ର ତପସ୍ୟାରେ ସିଦ୍ଧ ସାଧୁମାନଙ୍କ ବୟସ କଳାହୁଏ ନାହିଁ । ଚେଲାମାନଙ୍କ ମୁଖରୁ ଶୁଣାଯାଏ, ବୟଃକ୍ରମ ଅଢ଼େଇଶ ବରଷ । ମହନ୍ତବାବା ମଧ୍ୟ ଭକ୍ତ-ମାନଙ୍କଠାରେ ସେହି ଭାବରେ କଥାବାର୍ତ୍ତା କରିଥାନ୍ତି । ହଜାରେ ବରଷ ବୟସର ସାଧୁ ଦର୍ଶନ କରିବାକୁ ଯଦି କାହାରି ଇଚ୍ଛା ଥାଏ, ତେବେ ବାଲେଶ୍ୱର ସହର ମଧ୍ୟରେ ଦୁଧପିଆ ବାବାଜୀଙ୍କୁ ଦେଖିବାକୁ ଯାଆନ୍ତୁ । ଏହି ବାବାଜ ସ୍ୱୟଂ ସର୍ବଦା ଲୋକମାନଙ୍କଠାରେ ପ୍ରକାଶ କରିଥାନ୍ତି, ସେ ପୁରୀ ମନ୍ଦିର ପ୍ରତିଷ୍ଠାରେ ଭୋଗଖାଇଥିଲେ । ମୁଗଲିଆ ଅମଳରେ ସେ ବାଲକାରେ ଥିଲେ । ମାତ୍ର ଦେଖିଲେ ବୟସ ଷାଠିଏରୁ ଊର୍ଦ୍ଧ୍ୱ ବୋଧ ହୁଏ ନାହିଁ । ଏହି ବାବାଜୀଙ୍କର ଭାରି ମହିମା ଥିଲା । ଦିବା ନିଶି ଗଞ୍ଜେଇ ଆଉ ଦୁଧ ଛଡ଼ା ଅନ୍ୟ ଦ୍ରବ୍ୟ ସେବା କରୁ ନଥିଲେ । 'ସହର ମଧ୍ୟରେ ବିଶ୍ୱାସୀ ଭକ୍ତବୃନ୍ଦଙ୍କର ଅଭାବ ନାହିଁ । ଦଳ ଦଳ ଅମଲା, ମୁକ୍ତାର, ମହାଜନ, ଜମିଦାର ବାବାଜୀଙ୍କ ପାଦ ତଳେ ଲୁଣ୍ଠିତ ହେଉଥିଲେ । ରାଜଭୋଗରେ ମଠର ସେବା ଚଳୁଥିଲା; ମାତ୍ର ଆଜକୁ କେତେକ ବରଷ ହେଲା ଶକ୍ତି ପ୍ରଭାବରେ ବାବାଜୀ ବାଳଗୋପାଳ ଘେନି ଗୃହସ୍ଥାଶ୍ରମ ଅବଲମ୍ବନ କରିଅଛନ୍ତି । ଭକ୍ତବୃନ୍ଦ ଅନ୍ତର୍ଦ୍ଧାନ । କଥିତ ଅଛି, ସନ୍ନ୍ୟାସୀ ଓ ମୋଗଲମାନଙ୍କ ବୟସ ଜାଣିବା ନିତାନ୍ତ କଠିନ । ଏମାନେ ନିଷ୍ଟପ୍ତ ବୟସ

ସଂଖ୍ୟାରେ ଯୋଗ ବିୟୋଗ କରିଥାନ୍ତି । ଯେଉଁ ସାଧୁର ବୟସ ପଞ୍ଚାଶ, ସେ ଆଉ ଏକ ଶତ ସଂଖ୍ୟା ଯୋଗକରି ଦେଡ଼ଶତ କରିବେ । ମୋଗଲଙ୍କର ବୟସ ବିୟୋଗ । ଯାହାର ବୟସ ପଞ୍ଚାଶ, ପଚରିଲେ, ସେ ପଚିଶ ବିୟୋଗ କରି ବାକୀ ପଚିଶ ରଖିବେ । ଗୋଟାଏ ପୁରୁଣା କଥା ମନରେ ପଡ଼ିଲା, ପାଠକ ମହାଶୟ, ବିରକ୍ତ ହୁଅ ନାହିଁ, ସେ କଥାଟା କିନ୍ତୁ ନ ବୋଲି ରହିପାରୁ ନାହୁଁ । "କୌଣସି ସ୍ଥାନରେ ଦୁଇ ଜଣ ବୃଦ୍ଧ ଓ ଜଣେ ବିଂଶତି ବର୍ଷବୟସ୍କ ଯୁବା ମୋଗଲ ବସିଥିଲେ, କଥା ପ୍ରସଙ୍ଗରେ ପରସ୍ପରର ବୟସ ବିଷୟରେ ପ୍ରଶ୍ନ ହେଲା । ଯାହାର ସତୁରି ବରଷ ବୟସ, ସେ କହିଲେ ତାଙ୍କର ବୟସ ତିରିଶ । ଦ୍ୱିତୀୟ ବୃଦ୍ଧର ବୟସ ଷାଠିଏରୁ ଊର୍ଦ୍ଧ୍ୱ, ମାତ୍ର ପ୍ରଶ୍ନର ଉତ୍ତର ଦେଲେ — ସାହେବ, ମେରା ଉମର ମୁଜକୁ ମାଲୁମ୍ ନେହିଁ ହେ, ଲେକିନ ମେରା ବଡ଼ ଭାଇକା ଉମର ତିରିଶ କି ନଜିକ୍ । ଯୁବା ମୋଗଲକୁ ବୟସ ବିଷୟରେ ପ୍ରଶ୍ନ ହେବାରୁ ସେ ଉତ୍ତର ଦେଲା--ହଜୁର, ଲୋଗ୍ ଉମରକା ଯୋ ହିସାବ ଲଗାଏଁ ହେଁ, ମେରା ପଏଦା ବି ହୁଆ ନେହିଁ । ଅର୍ଥାତ୍ ତାହା ବୟସ ସଂଖ୍ୟାରୁ କୋଡ଼ିଏ ବାଦ ଦେଲେ ବାକୀ କିଛି ରହୁ ନାହିଁ ।" ଯାଉ ସେ ଅଲଣା କଥାଗୁଡ଼ାକ ଗୁଡ଼, ଏବେ ପ୍ରକୃତ କଥା ଧରିଯାଉ ।

ମହନ୍ତ ବାବାଙ୍କ ଦଳର ସାଧୁ ସଂଖ୍ୟା ପ୍ରାୟ ପଚିଶ । ସେଥି ମଧ୍ୟରୁ ମଧ୍ୟ ସମୟ ସମୟରେ ଆଠ ଦଶଜଣ ନୂଆ ପୁରୁଣା ହୋଇଥାନ୍ତି; ଅର୍ଥାତ୍ ଅନେକ ସାଧୁ ବାହାରି ଯିବାମାନେ ନୂତନ ସାଧୁ ଆସି ସେଇ ସ୍ଥାନ ପୂର୍ଣ୍ଣ କରନ୍ତି । ଆଶ୍ଚର୍ଯ୍ୟର ବିଷୟ, ପ୍ରାୟ ସମସ୍ତ ସାଧୁ ସମାନ ବୟସ୍କ, ସମାନ ଆକାର, ତୁଲ୍ୟରୂପେ ବେଶଭୂଷଣ । ସମସ୍ତେ ବନ୍ୟ ବରାହବତ୍ ବଳିଷ୍ଠ ଓ ନିରଳସ । ମସ୍ତକ ନିର୍ଜଟ, କ୍ଷୁଦ୍ର ବା ବାବୁରି କେଶମଣ୍ଡିତ । କ୍ଷୁଦ୍ରାକାର ଶ୍ମଶ୍ରୁବିଶିଷ୍ଟ ସମସ୍ତଙ୍କ ଦେହରେ ଗୈରିକ ଅଙ୍ଗା ଆକଣ୍ଠ ପଦଲମ୍ବିତ । ସ୍ୱଭାବ ଓ କଥୋପକଥନ ନିତାନ୍ତ କର୍କଶ । ଦୃଷ୍ଟି ତୀବ୍ର ଓ ଭୟ-ବିଭ୍ରମ-ବ୍ୟଞ୍ଜକ ! ସାଧୁମାନଙ୍କ କଥିତ ଭାଷା ହିନ୍ଦି । ୟୁରୋପ ଖଣ୍ଡରେ ଫରାସୀ ଯେପରି ସାର୍ବଭୌମ ଭାଷା, ଭାରତରେ ସେହିପରି ହିନ୍ଦି ଭାଷା ସର୍ବସ୍ଥାନ-ବ୍ୟାପୀ । ସାଧୁ ସନ୍ନ୍ୟାସୀମାନେ ଭାରତର ସର୍ବ ସ୍ଥାନରେ ଭ୍ରମଣ କରନ୍ତି; ସୁତରାଂ ବାଧ୍ୟହୋଇ ହିନ୍ଦି ବୋଲିବାକୁ ହୁଏ । ଯାହାର ମାତୃଭାଷା ହିନ୍ଦି, ତାହାକୁ ଅସୁବିଧା ଭୋଗ କରିବାକୁ ହୁଏ ନାହିଁ ।

ଆମ୍ଭମାନଙ୍କ ସାଧୁ ଦଳର ଭାଷା ମାତ ଶ୍ରେଣୀ କଥିତ ବଙ୍ଗଳା ଅଥବା ବଙ୍ଗ-ହିନ୍ଦି ଭାଷାର କଦର୍ଯ୍ୟ ବିମିଶ୍ରଣ । ଏହି ସାଧୁ ଦଳ ଭଜନ ପୂଜନ ବିଷୟରେ ନିଯୁକ୍ତ ଥିବାର କଦାଚିତ୍ ଦେଖାଯାଏ । ଗଞ୍ଜିକା ଟିପ୍ପନ, ସେବନ ଓ ପଞ୍ଚେଡ ସାମଗ୍ରୀ ଆୟୋଜନରେ ସର୍ବଦା ବ୍ୟସ୍ତ ଥାନ୍ତି । ସମସ୍ତ ସାଧୁ ମହନ୍ତ ବାବାଙ୍କର ନିତାନ୍ତ ଅନୁଗତ ।

ହାଥିଗୁମ୍ଫା ସମୀପବର୍ତ୍ତୀ ଆଉ ଗୋଟିଏ କ୍ଷୁଦ୍ର ଗୁମ୍ଫାରେ ଗୋଟିଏ ସାଧୁ ଦମ୍ପତି ଆଶ୍ରମ ସ୍ଥାପନ କରିଥିଲେ । ବାବାଜୀଙ୍କ ବୟସ ଆନୁମାନିକ ତିରିଶ ବା ବତିଶ । ଦେହ ସୁସ୍ଥ ଓ ସବଳ । ଯେପରି ଗଠନ ହେଲେ ଲୋକେ ସୁନ୍ଦର ପୁରୁଷ ବୋଲନ୍ତି, ଏହାଙ୍କ ଦେହ ସେହିପରି । ଦୃଷ୍ଟିପାତ ବ୍ୟାଧ-ଭୀତ ମୃଗବତ୍ ଚକିତ ଓ ଭୀତିବ୍ୟଞ୍ଜକ । ସର୍ବଦା ଲୋକନେତ୍ର ଅନ୍ତରାଳରେ ଗୁମ୍ଫା ମଧ୍ୟରେ ଆସୀନା, ସଯତ୍ନାବୃତବସନା ମାତାଜିର ବୟସ ବା ରୂପକାନ୍ତି ନିର୍ଣ୍ଣୟ କରିବା କିଞ୍ଚିତ୍ ଅସାଧ୍ୟ ବ୍ୟାପାର । ମାତ୍ର ତାଙ୍କର ପୃଷ୍ଠବ୍ୟାପୀ ନିତମ୍ବସ୍ପର୍ଶୀ ନବୀନ ନୀରଦ ସଦୃଶ କେଶରାଶି ଓ ସଂକୀର୍ଣ୍ଣ ମଧ୍ୟଭାଗ ଏବଂ ପଦଯୁଗଳର ବର୍ଣ୍ଣ ଓ ଗଠନ ଠାଣି ଦେଖିଲେ ଜଣାଯାଏ, ମାତାଜି ପରମାସୁନ୍ଦରୀ ଓ ପୂର୍ଣ୍ଣ ଯୌବନବିଶିଷ୍ଟା । ଏହି ସାଧୁଦମ୍ପତି ପଦାକୁ ବାହାରନ୍ତି ନାହିଁ, ସର୍ବଦା ଗୁମ୍ଫା ମଧ୍ୟରେ ରହିଥାନ୍ତି । କାହାରି ସହିତ କିଛି ମାତ୍ର କଥା ବୋଲନ୍ତି ନାହିଁ; ଏଥି ସକାଶେ ଲୋକମାନେ ଏହାଙ୍କୁ ମୌନୀ ବାବାଜୀ ଓ ମୌନୀ ମାତା ବୋଲନ୍ତି । ସାଧୁ ଅନ୍ୟ ସାଧୁର ସହାୟ । ଆମ୍ଭମାନଙ୍କ ଉଲ୍ଲିଖିତ ମହନ୍ତ ବାବା ମୌନୀ ମୌନୀଙ୍କ ଆବଶ୍ୟକ ଦ୍ରବ୍ୟାଦି ସଂଗ୍ରହ କରି ଦେବାର ଦେଖାଯାଏ ।

ସାଧୁ ଦର୍ଶନାର୍ଥୀ ଯାତ୍ରୀମାନେ ଖଣ୍ଡଗିରିକୁ ଆସି ସେହି ଦିନମାନରେ ଫେରିଯାନ୍ତି, କେହି ରାତିବାସ କରେ ନାହିଁ । ମାତ୍ର ଆଜକୁ ମାସାବଧି ଗତ ହେଲା, ଦୁଇଜଣ ବଙ୍ଗଦେଶୀୟ ସାଧୁସେବାପରାୟଣ ଯାତ୍ରୀ ବାସ କରି ରହି ଅଛନ୍ତି । ସାଧୁମାନେ କେବଳ ଧୂନିର ବିଭୂତି ଦେଇ ଲୋକମାନଙ୍କର ଅନେକ ଉତ୍କଟ ପୀଡ଼ା ଆରୋଗ୍ୟ କରିଥାଆନ୍ତି । ଆମ୍ଭମାନଙ୍କର ମହନ୍ତ ବାବା ମଧ୍ୟ ନେତ୍ର ମୁଦ୍ରିତ କରି ଅନେକ ଲୋକଙ୍କୁ ବିଭୂତି ବିତରଣ କରିବାର ଦେଖା-ଯାଏ । ଆମ୍ଭମାନଙ୍କ ଭକ୍ତଯୁଗଳ ଅନିର୍ଦ୍ଦିଷ୍ଟ ଉତ୍କଟ ପୀଡ଼ାରେ ପୀଡ଼ିତ । ଆରୋଗ୍ୟ କାମନାରେ ମହନ୍ତବାବା ଓ ଅନ୍ୟାନ୍ୟ ସାଧୁଙ୍କ ସେବାରେ ପ୍ରାତଃ-

କାଳଠାରୁ ରାତ୍ର ପ୍ରହରକ ପର୍ଯ୍ୟନ୍ତ ନିଯୁକ୍ତ ଥାନ୍ତି । ନିଜ ବ୍ୟୟରେ ଭୁବନେଶ୍ୱର ବଜାରରୁ ଭଲ ଭଲ ଗୋଲ ଗୋଲ ଜଟାବାଲା ଗଞ୍ଜେଇ କ୍ରୟ କରି ଆଣି ସାଧୁମାନଙ୍କୁ ସେବନ କରାଇଥାନ୍ତି । ଭଲ ଗଞ୍ଜେଇ ସଂଗ୍ରହ କାମନାରେ ସେମାନଙ୍କୁ କେବେ କେବେ ପୁରୀ ମଧ୍ୟ ଯିବାକୁ ହୁଏ । ମୌନୀ ମୌନୀ ସାଧୁ-ଦମ୍ପତି ପ୍ରତି ମଧ୍ୟ ଏମାନଙ୍କର ଅଚଳା ଭକ୍ତି । ସେମାନେ ମୌନାବଲମ୍ବନ କରି ରହିଥିଲେ ମଧ୍ୟ ସେମାନଙ୍କୁ ଗୁମ୍ଫାଦ୍ୱାର ନିକଟରେ ଗୁହାଁ ବସିଥାନ୍ତି, କଦାଚିତ୍ ବାଳଭୋଗ ସକାଶେ ମିଷ୍ଟାନ୍ନ ବା ଫଳ ମୂଳ କିଣି ଆଣି ଦେଇ ସାଧୁଦମ୍ପତିଙ୍କୁ ଦଣ୍ଡବତ କରି ଚାଲିଆସନ୍ତି ।

ଅଦ୍ୟ ପ୍ରାତଃକାଳରେ ଖଣ୍ଡଗିରିରେ ଭାରି ହୁଲସ୍ଥୂଲ ପଡ଼ିଯାଇଅଛି । ପୁରୀ ଜିଲ୍ଲାର ସ୍ୱୟଂ ମେଜେଷ୍ଟ୍ରର ସାହେବ ଉପସ୍ଥିତ । ରାତି ନ ପାହୁଣୁ ଖଣ୍ଡ-ଗିରି ସମ୍ମୁଖରେ ଚାରି ପାଞ୍ଚଟା ଡେରା ଟଣା ହୋଇଗଲେଣି । ଗୋଟିଏ ବଡ଼ ଡେରାରେ ମେଜ କୁର୍ଚ୍ଚି ଲଗାଇ ସାହେବ କଚେରି କରି ବସିଅଛନ୍ତି । ସାଙ୍ଗରେ ଚାରିଜଣ ପୋଲିସ ଦାରୋଗା, ଆଠଜଣ ମୁନ୍‌ସି, ଗୋଟିଏ ଭଲ ଜମାଦାର, ଶହେ ପର୍ଯ୍ୟନ୍ତ ବରକନ୍ଦାଜ, ଦୁଇ ବା ତିନି ଶ' ଲମ୍ବ ଲମ୍ବ ବାଉଁଶଠେଙ୍ଗାଧାରୀ ଚୌକିଦାର । ପୋଲିସ କର୍ମଚାରୀମାନେ ହାତଧରା ଜଗତ-ବେଢ଼ ପରି ଖଣ୍ଡଗିରିଟାକୁ ଘେରି ଅଛନ୍ତି । ବାହାରିବାର କାହାରି ଅଧିକାର ନାହିଁ । ସାଧୁ ସନ୍ନ୍ୟାସୀମାନେ ଧରା ହୋଇ ଆସି ମେଜେଷ୍ଟ୍ରର ସାହେବଙ୍କ ଡେରା ସମ୍ମୁଖରେ ଖିଆଡ଼ ହେଲେ । ଶିନଯାକ ତଦନ୍ତ ହେଲା, ଅପରାହ୍ଣ ସମୟରେ ଆମ୍ଭମାନଙ୍କ କଥିତ ଭକ୍ତଦୁଇଙ୍କ ସନାକ୍ତ ଦେବା ମୁତାବକ ପୂର୍ବବର୍ଣ୍ଣିତ ମହନ୍ତବାବା ମହାବୀର ଦାସ ଓ ତାହାଙ୍କ ସଙ୍ଗୀ ପଚାଶ ଜଣ ସନ୍ନ୍ୟାସୀ, ସେମାନଙ୍କୁ ଛାଡ଼ି ଅନ୍ୟ ଦଶ ଜଣ ସାଧୁ ହାତରେ ହାତକଡ଼ି ଦିଆଯାଇ ଶୁରଙ୍ଗରେ ଠୁଙ୍କି ଦିଆଗଲା । ଆମ୍ଭମାନଙ୍କ ମୌନୀ ବାବାଜୀଙ୍କର ମଧ୍ୟ ସେହି ଦଶା । ମୌନୀ ମାତା ପୋଲିସ ହେପାଜତରେ ରହିଲେ । ମୌନୀ ବାବାଜୀଙ୍କ ଗୁମ୍ଫା ଓ ହାତି ଗୁମ୍ଫାରୁ ଅନେକ ସୁନା ରୂପା ଅଳଙ୍କାର ଓ ଜହରତ, ଅନେକ ମୂଲ୍ୟବାନ୍ ଲୁଗା, ସାଲ ପ୍ରଭୃତି ବରାମଦ ହେଲା । ମେଜେଷ୍ଟ୍ରର ସାହେବଙ୍କ ହୁକୁମ ଅନୁସାରେ ଅନ୍ୟାନ୍ୟ ସାଧୁ ସନ୍ନ୍ୟାସୀ ଖେଦିତ ହେଲେ । ଉତ୍କଳର ନୈମିଷାରଣ୍ୟ ଖଣ୍ଡଗିରି ସେହି ଦିନଠାରୁ ସାଧୁଶୂନ୍ୟ ହୋଇଅଛି ।

ପରଦିନ ପ୍ରାତଃକାଳରେ ମେଜେଷ୍ଟ୍ରର ସାହେବ ବନ୍ଦୀମାନଙ୍କୁ ଉପଯୁକ୍ତ ପୋଲିଶ ହେପାଜତରେ କଲିକତା ଚାଲାଣ ଦେଇ ପୁଣି ରମାନା ହେଲେ ।

ପଶ୍ଚାତ୍ ପ୍ରକାଶ ପାଇଲା, ଉଲ୍ଲିଖିତ ମହାବୀର ଦାସ ମହନ୍ତ ବଙ୍ଗ ଦେଶର ପ୍ରସିଦ୍ଧ ଜଗା ଗୁଆଲା ଡକାଏତ ସର୍ଦ୍ଦାର, ଅନ୍ୟାନ୍ୟ ସାଧୁମାନେ ସଙ୍ଗୀ ଡକାଏତ । ଅନ୍ୟ ଦଶଜଣ ସାଧୁ ଅନ୍ୟାନ୍ୟ ଜିଲ୍ଲାର ଫେରାରି ଆସାମୀ । ମୌନୀ ବାବାଜୀ କଲିକତାର ଜଣେ ପ୍ରସିଦ୍ଧ ବଡ଼ ଲୋକଙ୍କ ଗୁମାସ୍ତା । ମୌନୀ ମାତା ତାହାଙ୍କ ପରିବାରସ୍ଥ ବିଧବା ବଧୂ । ଉକ୍ତ ବଡ଼-ଲୋକଙ୍କ ଘରୁ ଚୋରି ଯାଇଥିବା ଅନେକ ଅଳଙ୍କାର ଓ ବଙ୍ଗଦେଶର ଅନେକ ସ୍ଥାନର ଡକାଏତୀ, ଅନେକ ମାଲ ବରାମଦ ହୋଇଅଛି । କଥିତ ଭକ୍ତ-ଯୁଗଳ ଠଗି କମିଶନରଙ୍କ ଡିଟେକ୍‌ଟିଭ ପୋଲିସ ଅଫିସର ଅଟନ୍ତି ।



## ପୁନର୍ମୂଷିକୋଭବ

ଆଜକୁ ଶୃଳଶ ବର୍ଷ ପୂର୍ବ କଥା । ବାଲେଶ୍ୱର ଜିଲ୍ଲାରୁ ଲୁଣ ପୋକ୍ତାନ ଉଠିଗଲ । ଲୁଣାଦାଣ୍ଡୀ ଲୋକମାନଙ୍କର ସର୍ବନାଶ ଉପସ୍ଥିତ । ବାଲେଶ୍ୱର ଜିଲ୍ଲାର ପୂର୍ବାଞ୍ଚଳ ଉତ୍ତର ସୁବର୍ଣ୍ଣରେଖା କୂଳଠାରୁ ଦକ୍ଷିଣ ଧାମରାନଦୀ କୂଳ ପର୍ଯ୍ୟନ୍ତ ଉପକୂଳବର୍ତ୍ତୀ ସ୍ଥାନର ନାମଥିଲ ଲୁଣାଦାଣ୍ଡୀ । ଏ ଅଞ୍ଚଳବାସୀ ଅର୍ଦ୍ଧଲକ୍ଷାଧିକ ଲୋକର ଜୀବନାବଲମ୍ବନ ଏକମାତ୍ର ଲବଣ ପୋକ୍ତାନ । କେହି ଲୁଣ ମାରେ, କେହି ତହିଁରେ ନାନାପ୍ରକାର ସହାୟତା କରେ, ଥୋକେ ବ୍ୟବସାୟୀ, ଅନେକ ସରକାରୀ ଚାକର, କେହି କିଛି ନପାରିଲେ ସେ ଚୋର । ଲୁଣଚୋର ଓ ଚୋର ପଇକାର ଅସଂଖ୍ୟ । ଚୂଲିଆ ଲୁଣମାରି ଜମା କରନ୍ତି, ତାହା ସଂଖ୍ୟା ନେବେ ଓ ବନ୍ଦି କରିବେ ସରକାର । ତାହାର (ଚୂଲିଆର) ଯୋଗ ସାଜସରେ ଯେବେ କେହି ସେ ଲୁଣନେଇ ରାତି ଭିତରେ ଗଡଜାତକୁ ଚାଲାଣ ଦେଇ ଶସ୍ତାରେ ବିକି କରେ, ସେ ଚୋର ନୁହେଁ ତ ଆଉ କଣ ? ସମସ୍ତଙ୍କର ଉପାୟ ଏକାବେଳକେ ବନ୍ଦ । ତହିଁ ଉପରେ ପୁଣି ଭୟଙ୍କର ବିପଦ ଉପସ୍ଥିତ,ଲୁଣ କିଣି ଖାଇବାକୁ ହେବ । ମଫସଲର ସାଧାରଣ ଲୋକ ପକ୍ଷରେ ପଇସରବା ସୁଲଭ ନୁହେଁ । ଶାଗ ପିତାପାଣି ଭରସା,ଲବଣ ମାତ୍ର ସହାୟ, ସେହିଲବଣର ଅଭାବ । ଅଭାବ କାହିଁକି ? ବଜାର ଲାଗି ଲୁଣ ଢ଼େର ହାଟରେ ଜମାଅଛି । ହେଲେ ତାହା ତ ଭିକ୍ଷା ମିଳିବ ନାହିଁ, ପଇସା ଦେଇ କିଣିବାକୁ ହେବ । ପଇସା କାହିଁ ? ଆଉ ଗୋଟିଏ ବିପଦ, ହାଟ ଅନେକ ଗ୍ରାମଠାରୁ ଦୁଇ କୋଶ ଅଢ଼ାଇକୋଶ ଦୂର । ହାଟକୁ ଯାଉଛି କିଏ ? "ନିତ ଆଣି ନିତ ଖାଏ, ସେଲୋକ କି ବନ୍ଧୁ ଘର ଯାଏ ?" ସବୁବାଟ ବନ୍ଦ, ଉପାୟ କଣ ? ଅନ୍ୟ ଉପାୟ ଜଣାନାହିଁ । ଏଣେ ଲୁଣ ବିନା ପ୍ରାଣ ଯାଏ । ସୁତରାଂ ଚୋର ବାଟ ମେଲ । "ନଷ୍ଟସ୍ୟ କାନ୍ୟା ଗତିଃ ?" ନଷ୍ଟସ୍ୟ କିଏ ? ତୁମ୍ଭେ ଆମ୍ଭେ ଏପରି ଲଣ୍ଡଭଣ୍ଡରେ ପଡ଼ିଲେ କଣ କରନ୍ତ ବେଳେ ବିଗୁର କରି ଦେଖିବାର କଥା । ଲୁଣ ବିନା ପ୍ରାଣ ଯାଏ, ବାଟ ଏକପ୍ରକାର

ବନ୍ଦ । ଏବେ ଭଗବାନ ଘର ଗୃହପାଖରେ କୋଟିକୋଟି ମହଣ ଲୁଣ ଢ଼ାଳି ଦେଇଅଛନ୍ତି । ଉତ୍କଳମନ୍ଦାଡ଼ିନ୍ତୁ ମାଟି ମୁଠାଏ ଆଣି ପାଣିରେଗୋଳାଇ ମାରି-ଦେଲେ ଲୁଣ । ଖୁବ୍ ସହଜରେ, ଅତିଅଳ୍ପ ସମୟରେ ପିଲାଟିଏ ସେ ସେ ଲୁଣ ମାରିପାରେ । ମାତ୍ର ସରକାରଙ୍କ ମନା; ଲୁଣମାରି ଖାଇଲେ ଜେଲରେ ଚାଲାଣ ହେବ । ଏଥିରୁ ଲୋକମାନେ ସରକାରୀ ହୁକୁମ କେତେଦୂର ମାନି ବାଟ ଚାଲୁଥିଲେ କଥାଟା ସହଜରେ ସମସ୍ତେ ବୁଝି ପାରିବେ ।

ଆଜ ବାଲେଶ୍ୱର ସଦର କଚେରୀ ଖୁବ ଜୋର । ଲୁଣୋଦାଣ୍ଡୀର ଲୁଣ ଜେଲର ଜଗିବା ସକାଶେ ପୋଲିସ ଅମଲା ବାହେଲ ହେବେ । ଯେଉଁ ପୋଲିସ ବସିବ, ତାହାରନାମ ନିମକୀ ପୋଲିସ । ପୁରୁଣା ଏବାଲିସ ନିମକୀ ଅମଲା-ମାନେ ଜମାଦାରଠାରୁ ଇନ୍‌ସପେକ୍ଟର ପର୍ଯ୍ୟନ୍ତ କର୍ମରେ ବାହେଲ ହେଲେ । ନୂଆ ବାହେଲ ହେବେ କେବଳ କନେଷ୍ଟବଳ । ମିଶଲ କୋଠରୀ ମଧ୍ୟରେ ଘର୍ମ ଭିଡ଼ ହେବାରୁ କମେଜେଷ୍ଟର ସାହେବ କଚେରୀ ବାରନ୍ଦାରେ ଗୋଟାଏ କୁର୍ଚି ପକାଇ ବସିଅଛନ୍ତି । ସାହେବଙ୍କ ଚୌକୀ ପଛରେ ଦୁଇଜଣ ଅର୍ଦ୍ଦଳୀ ଛିଡ଼ାହୋଇ ବାରମ୍ବାର ପାଟିକରି 'ଜେପ, ଜେଓପ' କହି ଆପଣାମାନଙ୍କର ଅସ୍ତିତ୍ୱର ଏବଂ କର୍ମଠତାର ପରିଚୟ ଦେଉଅଛନ୍ତି । ସାହେବଙ୍କ ସମ୍ମୁଖ ପାଞ୍ଚ ଛ, ହାତ ଦୂରରେ ପେସ୍କାର ଉମେଦୁଆରମାନଙ୍କର ଓଡ଼ିଆ ଦରଖାସ୍ତ ଗୁଡ଼ାକ ପଢ଼ିଯାଉଅଛନ୍ତି । ଜଣ ଜଣକରି ଉମେଦୁଆରଙ୍କୁ ଡାକରା ହେଉଛି । ଯେଉଁଟା ମାଇନାରେ ଠେକିଲା, ସାହେବଙ୍କ ସଙ୍କେତରେ ପେସ୍କାର ତାହା ନାମଟିପି ପକାଇଲେ । ବାହେଲି କନେଷ୍ଟବଳ ଆଭୂମି ଶିର ସଂଲଗ୍ନ ହସ୍ତରେ ସଲାମ କରି ଚାଲି ଯାଉଅଛି । ଯେଉଁଟା ମାଇନାରେ ନ ଠେକିଲା, ଶୁଖିଲା ମୁହଁରେ ପଛଘୁଞ୍ଚା ଦେଇ ଚାଲିଯାଉଅଛି । ଏ ଉମେଦୁଆରଟା ନାମ ପେସ୍କାର ଟିପି ପକାଇଲେ । ଏ ଜଣକ କିଏ ? ଏ ଯେ ପେସ୍କାରଙ୍କ ଚାକିରିଆ କଣା ବାରିକ,ଜାତି ଭଣ୍ଡାରୀ । କଣାର କିଛି ବିଶେଷ ଗୋଟିଏ ପରିଚୟ ଆବଶ୍ୟକ । 'ହରିବିନା କୀର୍ତ୍ତନନାହିଁ ।' କଣା ଆମ୍ଭମାନଙ୍କର ଏହି କାହାଣୀର ମୂଳପାଣ୍ଡି । କଣା ପେସ୍କାରଙ୍କ ଘରର ଚାକର । ପେସ୍କାରଙ୍କ ଘର ବେଶିଧକରୁ ମଫସଲ ଗ୍ରାମରେ, କାରଣ ଶନିବାର ସଞ୍ଜଠାରୁ ସୋମବାର ସକାଳଯାଏ ତାହାଙ୍କ ସହରସ୍ଥ ବସାଘର ଦୁଆରେ କୋଲପ ପଡ଼ିଥାଏ । ସାନ୍ତ ବିକାଳେ ଗ୍ରାମକୁ ଯିବା ଆସିବା ସକାଶେ ଜଣେ ମନୁଷ୍ୟ ସଙ୍ଗରେ ଥିବା ଲୋଡ଼ା, ପୁଣି ସେ ଜଣେ ସରକାରୀ ଅମଲା । ବସାରେ ଜଣେ ଭଣ୍ଡାରୀ ଚାକର ନ ରହିଲେ

ଅଚଳ । ଏଥିସକାଶେ ନଜ ଟ୍ରାମର ଭଣ୍ଡାଗ୍ରା କଣାକୁ ପାଖରେ ରଖିଅଛନ୍ତି । କଣା ବାବୁଙ୍କ ବସାରେ ସବୁ କାର୍ଯ୍ୟକରେ, କଚେରୀକୁ ବସ୍ତାନ ନେବା ଆଣିବା କରେ । ପେସ୍କାରଙ୍କ ବେତେଷଇରେ ଚଳେ, ପେସ୍କାରଙ୍କଠାରୁ ସେ ଅଲଗା କିଛି ଦରମା ପାଏ କି ନାହିଁ, ଏକଥା କାହାରିକୁ ଜଣା ନାହିଁ । କଚେରୀରେ ଛ'ମାସ ଉମେଦବାରୀ କାର୍ଯ୍ୟକରେ, ସେ ଦରମାଟା ପାଏ । ପୁଣି ପେସ୍କାରଙ୍କ ବସାକୁ ଯେଉଁ ସବୁ ମଉକଲ ଯିବା ଆସିବା କରନ୍ତି, କାହାର ମାମଲା ଡିକ୍ରୀ ବା କାହାର କିଛି କର୍ମ ହାସଲ ହେଲେ, କାହାର କାହାଠାରୁ ବକ୍‌ସିସ ବୋଲି ଦୁଇପଇସା ହାତ ପଏଠକରେ । କଚେରୀଆ ବୋଲି ଗାଁ ଲୋକେ ତାହାକୁ ମାନନ୍ତି, ଗଣନ୍ତି । 'ନବଣାଂ ନାପିତୋ ଧୂର୍ତ୍ତଃ' । ପୁଣି କଚେରୀ ଯିବା ଆସିବାରେ ଆହୁରି କିଛି ବୁଦ୍ଧି ଫେରିଛି । ଦେଖିବାକୁ ମଧ୍ୟ ପଞ୍ଚହାତା ମର୍ଦ୍ଦ । ବୟସ ଅନୁମାନରେ ପଚିଶ ଛବିଶ ମଧ୍ୟରେ । ଲୋକ ପାଞ୍ଚଟା 'ବ'କାରରେ ମର୍ଯ୍ୟାଦାପାଇ ଥାଆନ୍ତି । ବିଦ୍ୟା, ବପୁ, ବାକ୍ୟ, ବସ୍ତ୍ର ଓ ବିଭବ । କିଣା ଦେଖିବାକୁ ମଣିଷଟାପରି ମଣିଷ, ଦୁଇକଥା କହିପାରୁଛି ପାରେ । ସରକାରରୁ କନେଷ୍ଟବଲ ଦରମା ମାସକୁ ୫ ୬ ଙ୍କା; ସୁତରାଂ, ଊଣା ଅଧିକରେ ତାହାର ତିନଗୋଟା 'ବ'କାରରେ ଅଧିକାରଥିଲା, ଏଥକୁ ଦରକାର ବେଳେ ସ୍ଥାନବିଶେଷରେ ସେ ଯଦି ଗ୍ରୁଡ ଫୁଲାଇ ବାଟ ଚାଲେ, ତାହା ପକ୍ଷରେ ଅସୁନ୍ଦର ଦିଶିବନାହିଁ । ଆଜକା ବେଶଟା କିଣାର କିଛି ସ୍ୱତନ୍ତ୍ର । ନଅହାତ ବାଲବଶି ଦେଶୀ ସୂତାବୁଣା ଖଦଡଖଣ୍ଡେ ପିନ୍ଧିଛି ( ସେ ସମୟରେ ବିଲାତି ଗୋଷ୍ଟମାରକା ଧୋତି ଦେଶକୁ ଆସିନାହିଁ ) । ଦେହରେ ବନ୍ଧଲଗା ଗୋଟାଏ ଅଙ୍ଗା, ଦୋମୁହାଁ ଖଣ୍ଡେ ମୁଣ୍ଡରେ ପଗଡ଼ି । ଆଜ ଅମୃତବେଳରେ କିଣୁ ମୁଣ୍ଡରେ ପାଗ ବାନ୍ଧିଥିଲା, ସେହି ପାଗ ବଜାଏ ରହିଲା, ଅଧିକନ୍ତୁ ସରକାରରୁ ମିଳିଥିବା ସାଲୁ ଲୁଗା ଲାଲ ପାଗ ସେ ସ୍ଥାନ ଅଧିକାର କଲା । କିଣା ବାଉକର ନାମ ସରକାରୀ କାଗଜରେ ଦରଜ ହେଲା, କିଣାରାମ ସିଂ ।

ପରଦିନ ସକାଳେ କିଣାରାମ ସିଂ ଡ୍ରେସ ପିନ୍ଧି କାନ୍ଧରେ କନେଷ୍ଟବଲ ବେଗ୍ ଝୁଲାଇ କର୍ମସ୍ଥାନକୁ ବାହାରିଲେ । କର୍ମ ସ୍ଥାନରେ ପହଞ୍ଚିବାକୁ ସଞ୍ଜ ସଞ୍ଜ । ତାହାଙ୍କ ବିଟରେ ଗୁରିଖଣ୍ଡ ଗ୍ରାମ, ସେଥି ମଧ୍ୟରେ ମହାମପୁର ଗ୍ରାମଟା ସବୁଠାରୁ ବଡ଼ । କିଣୁ ସିଂ ସେହିଗ୍ରାମ ମଝି ଭାଗବତ ଘରେ ଫାଣ୍ଡି ଠିକ୍‌କଲେ । ସେତେବେଳେ ସରକାରୀ ଫାଣ୍ଡି ନଥିଲା । ସେ ଆପେ ଭାଗବତ ଘରକୁ ଫାଣ୍ଡି ନାମକରଣକଲେ । ସରକାରୀ କଥା, ପାଟି ଫିଟାଇବାକୁ ସାଧ

କାହାର ? କଣାଗ୍ରାମ ସିଂ ମଫସଲରେ ଆଉ ଗୋଟିଏ ନାମ ପାଇଲେ 'ପୋଲଶ ଜମାଦାର ।'

ମେଜେଷ୍ଟର ସାହେବଙ୍କ ଗସ୍ତ ସମୟରେ ପେସ୍କାର ହମସ୍ତାଏ କଣୁ ମଫସଲ ଯିବା ଆସିବା କରିବାରୁ ଆମଲାଗିରି ଘଡଘାଡ ତାହାକୁ କଣ୍ଟକକନ୍ଥ ଜଣା । ଜମାଦାର ଗ୍ରାମରେ ପହଞ୍ଚି ଚୌକିଦାରମାନଙ୍କୁ ତଲବ କରିଦେଲେ । ଡାକହାକରେ ଗୁରିଖଣ୍ଡ ଗ୍ରାମରେ ଚହଳ ପଡିଗଲା । ନୂଆ ହାକିମ ହାଜର, ଆଉ କ କେହି ଘରେ ରହିପାରେ ? ମୁଖ୍ୟା ମୁଖ୍ୟା ଲୋକ ହାଜର ହୋଇଗଲେ । ଦେଖଣାହାରୀ ମଧ୍ୟରେ ପିଲାଗୁଡାକ ବେଶୀ । ଘର ମାଇକିନିଆ-ମାନେ ଛାଟି କବାଟ ଦରଆଉଜା କରି ଘର ଭିତରୁ ଗୃହିଁଛନ୍ତି । ଜମାଦାରେ ପାଟି କରି ସମସ୍ତଙ୍କୁ ଅନାଇ ସରକାରୀ ହୁକୁମ ଶୁଣାଇଦେଲେ । ଏଥିର ସାରକଥା ଏହିପରି ବୁଝାଗଲା, 'ଗୁରିଖଣ୍ଡ ଗ୍ରାମରେ ସେ ମଫସଲ ହାକିମ ।' କଚେରୀ ଭାଙ୍ଗିବାକୁ ବେଳ ଗଡ଼ିଗଲାଣି । ଗ୍ରାମର ବୁଢ଼ା ଦଫାଦାର ଜଣେ ପୁରୁଣା ଲୋକ । ଢେ଼ର ହାକିମ ହୁକୁମା ଅମଳକଲାଣି । ନାମ ଶଙ୍କୁ ମଲିକ । ଛିଡା ହୋଇ ଗ୍ରାମ ଲୋକଙ୍କୁ ଅନାଇ କହିଲା, "ଆଉ ବସିଲେ କଣ ହେବ, ବେଳ ଗଡ଼ିଗଲା, ଏପର୍ଯ୍ୟନ୍ତ ହାକିମଙ୍କ ଚର୍ଚ୍ଚା ହେଲାନାହିଁ ।" ଦଫାଦାର କଥା ଶୁଣି ଗୋଟି ଗୋଟି ହୋଇ ସମସ୍ତେ ଉଠିଗଲେ । ଆଉ ଏକ ସ୍ଥାନରେ ବସିବିଗୁରିକଲେ । ଗ୍ରାମଯାକ ଭେଦା ହୋଇଗଲା, କାହାଘରୁ ଗୃଉଳ,କାହା ଘରୁ କାଠ, ଲୁଣ, ବାଇଗଣ ଇତ୍ୟାଦି ପହଞ୍ଚିଗଲା । ନାଥ ମହାକୁଡ଼ ଗଉଡ଼ ଗୋଟାଏ ଠେକିରେ କିଛି ନିରୁତା ଗାଈଦୁଧ, ଦଶୁ ଘିଅ ପହଞ୍ଚାଇ ଦେଲା । ଗୁରିଜଣ ପାଣଚୋକା ଧାଇଁ ଯାଇ ବିଲ ମଧ୍ୟରୁ ଗୋଟାଏ ପାଣି ଖାଲ ବୋହିଦେଇ ଗଡେଇ, ଚେଙ୍ଗ, କଉ ଟିପିରି ଇତ୍ୟାଦି ଦୁଇଗଣ୍ଡା ଭଳି ଚପି ନେଇ ଆସିଲେ । ପ୍ରଥମଦିନ ଜମାଦାରଙ୍କ ଭୋଜନ ବଢ଼ିବାକୁ ବଡ ଅନ୍ଦାଜ ଘଡ଼ିକ ସରିକି । ସେଦିନ ଏକାହାର । ଏହିପରି ଦୁଇଦିନ, ପାଞ୍ଚଦିନ, ଦଶ ଦିନ ମଧ୍ୟ ସ୍ୱଚ୍ଛନ୍ଦରେ କଟିଗଲା । ଦିନ ଯେପରି ଯାଏ, ସେହିପରି ବହିଯାଉଛି । ଜମାଦାରଙ୍କ ଭୋଜନ ବିଷୟରେ କୌଣସି ଚିନ୍ତା ଭାବନା ନାହିଁ । ପ୍ରତିଦିନ କାହୁଁ ସିଦା ଗୃଲ ଆସୁଛି । ଦୁଧ ମାଛ ଘିଅର ଅଭାବ ନାହିଁ । ଏଠା କିଛି ଗ୍ରାମବାସୀଙ୍କ ଧର୍ମବୁଦ୍ଧି ଯୁକ୍ତ ଆତିଥେୟ ନୁହଁ,ଏହାର ମୂଳ କାରଣ ଭୟ ଓ ଜମାଦାରଙ୍କ ମନୋରଞ୍ଜନ କରିବାଅଟେ । କେତେବେଳେ କ'ଣଅଛି,ଗ୍ରାମ ଚୂଡ଼ାନ୍ତାଯାକ ତ ସ୍ପଷ୍ଟ, ଜମାଦାରଙ୍କ ମୁଠାରେ ଥାଉ । ଜମାଦାରଙ୍କୁ ହାଙ୍କୁ

ଫୋଡ଼ିବାକୁ ଦିଏନାହିଁ, ଗ୍ରାମର ପୁରୋହିତ ନରହରି ପଣ୍ଡା ଦୁଇଓଳି ଘୋଷାଇ କରି ଦେଇଯାଏ । ବେଠିଆ ଭଣ୍ଡାରୀ ରାମା ବସାରେ ଘୋଷାଇ ଦେଉଳ, ବସାଳପାଟପାଟ୍ଟି, ସଙ୍କୁଡ଼ି ବାସନମଜା ଇତ୍ୟାଦି କର୍ମ କରିଦିଏ । ଦିନେଦିନେ ଜମାଦାର ଗସ୍ତରୁ ବାହୁଡ଼ି ଆସିଲେ ଗୋଡ଼ ହାତରେ ତେଲ ଟୋପାଏ ମାରିଦିଏ । ଏହିପରି ଆହୁରି ଦୁଇ ପାଞ୍ଚଦିନ କଟିଗଲା । ଦିନେ ଜମାଦାରେ ବସି ବସି ବିଚାର କଲେ, ଏପରି ବସି ବସି ଖାଇଲେ ଚଳିବ ନାହିଁ ତ, ସରକାରୀ କାମ ବଜାଇବାକୁ ହେବ । ଲୁଣଚୋରର ଯେ ଘରେଘରେ ଚଳକ । ଜମାଦାର କେତେଦିନ ଗ୍ରାମରେ ରହି ବେଶ ବୁଝିଲେଣି; ମାତ୍ର ଧରିବେ କିପରି ? ଗ୍ରାମ ଲୋକେ ହାଟରୁ ଦୁଇ ପଇସାର ବିଲାତି ଲଫ୍ରି ଲୁଣ କିଣିଆଣି ରଖିଅଛନ୍ତି, ଜମାଦାରଙ୍କ ସିଦାରେ ସେହି ଲୁଣ ଦିଅନ୍ତି । ଜମାଦାରେ ଏ କଥାଟା ମଧ୍ୟ ବୁଝିଲେଣି । ଦିନଯାକ ଜମାଦାର ପାଖରେ ଲୋକ ଛୁଟନ୍ତି ନାହିଁ । ରାତି ଛ ଘଡ଼ିଯାଏ ପାଖରେ ରହି ଏଣୁ ତେଣୁ କହି ଭୁଲାଉଥାଆନ୍ତି, ଅର୍ଥାତ୍ ଜମାଦାର କେତେବେଳେ କଣ କରୁଅଛନ୍ତି ସମସ୍ତେ ଜାଣିଥାଆନ୍ତି । ଗ୍ରାମର ଅବଧାନେ ବନମାଳୀ ଓଝା ସଞ୍ଜବେଳେ ଦୁଇଘଡ଼ି ଫାଣ୍ଡିରେ (ଭାଗବତ ଘରେ) ବସି ଜମାଦାରଙ୍କୁ ଗୀତ ଶୁଣାଏ—ହାତ ମୁଣ୍ଡ ହଲାଇ 'ବଟେ ବସିଥିଲା ଧ୍ରୁବ ଉପରେ' ଗୀତର ଅର୍ଥ କରେ । ଗ୍ରାମର ଲୋକ ଏକଜୋଟ, ଆଉ ସରକାରୀ ଲୋକ ଦିଗବାର, ସେ ତ ଗ୍ରାମବାସୀ ମଧ୍ୟରେ ଜଣେ । ଜମାଦାରେ ବର୍ତ୍ତମାନ କିଛି ଚିନ୍ତାରେ ପଡ଼ିଲେଣି ।

ଆଜି ଜମାଦାରଙ୍କ ମିଜାଜ ଭାରି ବିଗିଡ଼ିଛି । ସବୁ କଥାରେ ଖପା, ସମସ୍ତଙ୍କ ଉପରେ ଖପା । ରାଗରେ ଗୁମ୍ମାରି ଫାଣ୍ଡିରେ ବସିଛନ୍ତି, କାହାରି ସହିତ କିଛି କଥାନାହିଁ । ଦିଗବାର ଶଙ୍କୁମଲ୍ଲିକ ଗୁରି ହାତିଆ ବାଉଁଶ ଠେଙ୍ଗାଟା କାନ୍ଧରେ ଧକାଇ ପିଣ୍ଡାତଳେ କୋଡ଼ିଏ ହାତ ଦୂରରେ ବସିଛି । ଜମାଦାର ଖୁବ୍ ଖପାହୋଇ ଦିଗବାରକୁ ପଚାରିଲେ, "କି ରେ ? ସେ ଆସିଲା ନାହିଁ ?" ଦିଗବାର ଛିଡ଼ା ହୋଇ ହାତଯୋଡ଼ି କହିଲା—ହଜୁର, ଏଥର ଲଗା ତା ପାଖକୁ ପାଞ୍ଚଥର ଗଲି, ଆସିଲା ନାହିଁ । କହିଲା, 'ମୁଁ କଣ ଜମାଦାର ସଙ୍କୁଡ଼ି ଉଠାଇ ତିନ ପାଞ୍ଜିରୁ ଯିବ ? ଜଣା ଅଜଣା ଗ୍ରାମ ସାଆନ୍ତଙ୍କ ବୋଲରେ ପଞ୍ଜ ଯାହା କରି ଯାଇଛି—ଯାଇଛି; ଆଉ ଏଣିକି ପାରିବ ନାହିଁ ।"

ସଞ୍ଜବେଳେ ଗ୍ରାମର ମୁଖିଆ ମୁଖିଆ ଲୋକମାନେ ଭାଗବତ ଘର-ଠାରେ ହାଜର ହୋଇ ରାମ ବାରିକ ଭଣ୍ଡାରୀକୁ ଡକାଇଲେ । ରାମା ହାଜର

ହୋଇ ଜମାଦାରଙ୍କୁ ଦଣ୍ଡବତ କରି ହାତଯୋଡ଼ି ଛିଡ଼ା ହେଲା । ଗ୍ରାମର ପ୍ରଧାନ ଗୋପାଳ ଘଡ଼େଇ ପଚାରିଲେ,"କରେ ରାମା, ତୁ ଆଜ ଜମାଦାରଙ୍କ ବସାରେ କଅଁ ହାଜର ହେଲୁ ନାହିଁ ?" ରାମା ଦୁଇଥର ଗଳା ଖଙ୍କାରି ଦେଲା, ଦୁଇଥର ଗୁଇଁଗାଇଁ ହେଲା, କଣ ବଡ୍‌ବଡ୍ କରି କହିଲା । ଘଡ଼େଇ ଆଉ ଥରେ ଧମକାଇ ପଚାରିଲେ,"ରେ, କଣ କହୁଛୁ ସଫା କରି କହ ।"

ରାମା କହିଲା,"ଆଜ୍ଞା, ଆଜ ସକାଳେ ନରସିଂହପୁରରୁ ଆମ ଜାତି ପରମାଣିକ ଆସିଥିଲେ । ମୋତେ ମନା କରିଗଲେ । ଏଣିକି ଆଉ ଜମାଦାରଙ୍କ ସଙ୍କୁଡ଼ି ଉଠାଇଲେ ମୁଁ ଏକଘରିଆ ହେବି । ଆଜ୍ଞା, ଆପଣମାନେ ନଶାପ କରନ୍ତୁ, ଜାତିପାଟକ କଥା, ମୁଁ କି ପରମାଣିକ କଥା ହେଳି ପାରେଁ ?" ସମସ୍ତେ ଚୁପ୍ ଚୁପ୍, କଥାଟା ଫିଟିଲା ନାହିଁ ମାତ୍ର ସମସ୍ତେ ବୁଝିଗଲେ ଜମାଦାରେ ଜାତିରେ ଭଣ୍ଡାରୀ । ରାମା ଜାତିଭାଇ ସେବା କରିବାକୁ ନାରାଜ । ଜମାଦାରେ ରାଗରେ କମ୍ପୁଛନ୍ତି; ମାତ୍ର ଲୋକଟା ଖୁବ୍ ସିଆଣା କିନା,ବିଚାରି କଲା, ରାମା ଉପରେ ଜୁଲମ କଲେ କଥାଟା ଫିଟିଯିବ । ତୁନି ଚାପ ହୋଇ ରହିଲେ । ରାତି ହେଲା, ଗୋଟି ଗୋଟି ହୋଇ ସମସ୍ତେ ଘରକୁ ଚାଲିଗଲେ । ସେଥି ପଛେ ପଛେ ରାମା ମଧ୍ୟ ଚାଲିଗଲା ।

ଜମାଦାରଙ୍କ ସାତ ପୁରୁଷର କାମ ଅଇଣ୍ଠା ଉଠା । ପେସ୍କାରଙ୍କ ବସାରେ ମଧ୍ୟ ସେହି କାମରେ ବାହେଲଥିଲେ । ଆପଣା ସଙ୍କୁଡି ବାସନଟା ମାଜି ପାରିବେ ନାହିଁ ? ତେବେ କଥା କଣ କି ଏଠାରେ ମର୍ଯ୍ୟାଦାକୁ ଜଗି ଚାଲିବାକୁ ହେବ ତ ! କଣ କରିବେ, କାମ ଚଳିଗଲା; ମାତ୍ର ରାମା ଉପରେ ରାଗଟା ରହିଗଲା ।

ହିନ୍ଦୁ ପୁରଣ କଥାସବୁ ଜାଣନ୍ତି ବୋଲି ଜଣେ ବୁଢ଼ା ମୁସଲମାନ ମୌଲବୀଙ୍କର କିଛି ଦେମାକ ଥିଲା । ସେ ବୋଲନ୍ତି, "ମହାଭାରତ ଆଉର କୁଛ ନେହିଁ । ଭାଇ ଭାଇମେଁ କି ତକରାର କେସ୍‌ସା । ଆଉର ରାମାୟନ୍ ଯୋ ହେ, ଭାଇକା ଚୁଗଲଖୋରିମେଁ ରାବଣକା ବୁନିଆଦ ବରବାଦ ।" ମୌଲବୀ ସାହେବଙ୍କ କଥା ଯାହା ହେଉ ଆମ୍ଭେମାନେ କିନ୍ତୁ ସଚରାଚର ଏଡ଼ସନାଲ ମୁନସଫି ଦୁଆରଠାରୁ ହାଇକୋର୍ଟ ଦରଜା ପର୍ଯ୍ୟନ୍ତ ଭାଇଭାଇ ତକରାରରେ ଅନେକ ଖାନଦାନ ଖିନ୍‌ଖାରାପ ହେବାର ଦେଖିଅଛୁଁ । କ୍ଷୁଦ୍ରାଦପି କ୍ଷୁଦ୍ର

ଘମ ବାଉରିର ମଧ୍ୟ ନିଷ୍କୃତି ନାହିଁ । ଘମ ବାଉରିର ଖାସ୍ପାର୍ ମଧ୍ୟରେ ଜଣଙ୍କ ସଙ୍ଗରେ ତାହାର ଚାଳଚଳନ ଥିଲା । ଘମା ଉପରେ ଜମାଦାରେ ଖାସା ଖପା ହୋଇଥିବା ଗ୍ରାମଯାକ ଜଣା, ତା କାନରେ ମଧ୍ୟ କଥା ପଡ଼ିଲା । ଘମାକୁ ଜବଦ କରିବା ପାଇଁ ଦିନେ ନଟ୍‌ଖୋକାରେ ଜମାଦାର ପାଖରେ ହାଜର ହୋଇ ଘମା ଘର ମଧ୍ୟରେ ଚୋରାଲୁଣ ମାରୁଥିବା କଥା କହିଗଲା । ଜମା-ଦାରେ ଖାସା ଖୁସି, ନିଧିଟାଏ ପାଇଗଲେ । ଗୋଟାଏ ଠେକାରେ ଯୋଡ଼ାଏ ଆମ୍ବ ଝଡ଼ିବ; ଅର୍ଥାତ୍ ବଦମାଏସ ଘମା ଜବଦ୍ ହେବ, ଆଉ ଏକ ନମ୍ବର ମାମଲା ଦାଏର ହେବ ।

ତହିଁ ଆରଦିନ ସକାଳେ ପ୍ରହରକ ବେଳେ ଜମାଦାରେ ଦେଢ଼ ଖସ ଭିଡ଼ ଦଗବାରଙ୍କୁ ସଙ୍ଗରେ ଧରି ଘମା ଦାଣ୍ଡ ଦୁଆରେ ହାଜର । ଜମାଦାର ଠିକ୍ ସନ୍ଧାନ ପାଇଥିଲେ । ଘମା ତାହାର ଘର ପାଚଘିବୁଲା ମଝି ଅଗଣାରେ ଅଧ ହାଣ୍ଡିଏ ଦହପାଣି ଘେନି ଧାନଉଁଷା ଚୁଲାରେ ଲୁଣ ମାରିବାକୁ ଯାଉ-ଥିଲା । ଜମାଦାର ଏକାବେଳକେ ଅଗଣା ମଧ୍ୟରେ ତାହା ଆଗରେ ହାଜର । ଘମା ପରଖା ଲୋକ, ଜମାଦାର ଦେଖିବା ମାତ୍ରେ ସବୁ କଥା ବୁଝିଗଲା, ଲଣ୍ଡ ଭଣ୍ଡ ହୋଇ ପାଣିପାକ ନଳା ମୁହଁରେ ଢାଳିଦେଲା । ଜମାଦାର ଖୋଦ ଦେଖୁଛନ୍ତି, ଆଉ କଣ ? ଘମା ତତ୍‌କ୍ଷଣାତ୍ ଗ୍ରେପ୍ତାର । ଯେଉଁଠାରେ ଲୁଣପାଣି ଢ଼ଳା ହୋଇଥିଲା, ସେହିଠାରୁ ଅଧହାଣ୍ଡିଏ ମାଟି ଘମା ହାତରେ ପୂରାଇ ଦାଣ୍ଡକୁ ଭିଡ଼ି ଆଣିଲେ । ଜମାଦାର ହୁକୁମରେ ଦଗବାର ଘମା ଡେଣା ବାନ୍ଧି ପକାଇଲା । ଦଗବାର ବାଁ କାନ୍ଧରେ ଠେଙ୍ଗା, ଡାହାଣ ହାତରେ ଘମା ହାତ ହାତବନ୍ଧା ଦରସି ଧରି ଗ୍ରାମ ମଝିଦାଣ୍ଡରେ ଭିଡ଼ ଭିଡ଼ ଫାଣ୍ଡିକୁ ଘେନିଗଲା । ଜମାଦାରଙ୍କ ହୁକୁମରେ ଆଉ ତିନିଖଣ୍ଡ ଗ୍ରାମର ତିନି ଜଣ ଦଗବାର ହାଜର ହୋଇଗଲେ । ସେମାନଙ୍କ ହେପାଜତରେ ଚୋର ଘମା ବନ୍ଧା ହୋଇ ଫାଣ୍ଡିରେ ସେ ଦିନକ ପଡ଼ିରହିଲା ।

ଗ୍ରାମଯାକ ଚହଳ ପଡ଼ିଗଲା । ସହରର ଜାପୁଗାରେ ଏପରି କଥାକୁ କେହି ଅନାଏ ନାହିଁ, ମାତ୍ର ମଫସଲରେ ଏହା ଗୋଟିଏ ଖାସା କାଣ୍ଡ । ବିଶେଷରେ ହୋଲିଶ ଜମାଦାର ଲୁଣଚୋର ଧରିଲାଣି । ଗ୍ରାମ ଯାକ ସମସ୍ତଙ୍କ ମୁହଁରେ ଏହିକ କଥା, ସମସ୍ତଙ୍କର ସବୁ ପ୍ରକାର କାର୍ଯ୍ୟ ବନ୍ଦ । କାହାରି ମନରେ ସୁଖ ନାହିଁ; ମାତ୍ର ଗାଁ ପିଲାଗୁଡ଼ାଙ୍କର ଖାସା ଆନନ୍ଦ, ଅବଧାନେ

ଗୃହଶାଳୀ ଛାଡ଼ ଯାଇଅଛନ୍ତି । ପିଲାଗୁଡ଼ାକ ପଲପଲ ହୋଇ ଦ୍ୱମାକୁ ଦେଖିବା ପାଇଁ ଭାଗବତ ଘରକୁ ଧାଇଁଛନ୍ତି । କେତେକ ଲୋକ ଦେଖିବା ପାଇଁ ବରଗଛ ମୂଳରେ ଘେରି ଘେରି ଧମକାଇ ତଡ଼ି ଦେଉଛନ୍ତି, ଉତ୍ସୁକ ପିଲାଏ ଆସି ପୁନର୍ବାର ଧୀରେ ଧୀରେ ଭାଗବତ ଘର ପାଖରେ ଜମା ହେଉଛନ୍ତି, ଏହାପରେ ସେମାନଙ୍କର କାର୍ଯ୍ୟ ଲାଗିଛି ମାଇକିନିଆ ମାନେ ଘରଧନ୍ଦା ଛାଡ଼ି ଭୁନ୍ ହୋଇ ବସିଛନ୍ତି। ଗ୍ରାମରେ ଯେମନ୍ତ ବଜ୍ରପାତ ହୋଇଅଛି । ଆଜି ଦ୍ୱମା ଧରାଗଲା, କାଲି କାହା କପାଳରେ କଣ ଅଛି କିଏ କହିପାରେ, ଲୁଣ ମରିଚ ସମସ୍ତଙ୍କ ଘରେ । ସରକାରକୁ ବଳ କାହାର ? ସେଦିନ ଦିନଓଳି ଖିଆ ପିଆ ନାହିଁ। ଅନେକ ଲୋକଙ୍କ ଘରେ ସଞ୍ଜ ବେଳେ ହେଲା । ଦ୍ୱମା ଘରେ ତ ଅରନ୍ଧା ଅବସ୍ଥା ।

ଗ୍ରାମମୁଣ୍ଡ ବରଗଛମୂଳରେ ପୁରୁଖା ପୁରୁଖା ଆଠ ଦଶ ଜଣ ଲୋକ ବିଚାର କରିବାକୁ ବସିଗଲେ, ଅନେକ କଥା ଅନେକ ତର୍କବିତର୍କ ଉତ୍ତାରେ ସ୍ଥିର ହେଲା—ଯେପରି ହେଉ, ଯେତେ ଟଙ୍କା ଲାଗୁ, ଦ୍ୱମାକୁ ଖଲାସ କରାଇବାକୁ ହେବ । ସମସ୍ତଙ୍କ ପରାମର୍ଶରେ ଗ୍ରାମର ପୁରୋହିତ ବୃଦ୍ଧ ବ୍ରାହ୍ମଣ ନାରାୟଣ ମିଶ୍ର କଚେରୀରେ ଜମାଦାର ସଙ୍ଗରେ ସାକ୍ଷାତ କଲେ । ଜମାଦାରେ ଓଳଗି ହେବା ଆଗରୁ ମିଶ୍ର ଦୁଇହାତ ଆଞ୍ଜୁଳା କରି କମ୍ପିତ ନଇଁକରି, "ଅଶ୍ୱତ୍ଥାମା ବଳୀ ବ୍ୟାସ ହନୁମାନ ବିଭୀଷଣ" ଇତ୍ୟାଦି ଶ୍ଲୋକ ପଢ଼ି ଜମାଦାରଙ୍କ ଚିରାୟୁ, ଗୋପଲକ୍ଷ୍ମୀ, ଧନଧାନ୍ୟ ଇତ୍ୟାଦି ଜନିଷ୍ଟ ପ୍ରାପ୍ତିର ସୂଚନା କରି ଧୀରେ ଧୀରେ ପାଖରେ ବସିଲେ । ଜମାଦାର ପୁରଖା ଲୋକ, ମିଶ୍ରଙ୍କ ଆଗମନ ଅଭିପ୍ରାୟ ଟିକି ବୁଝିଗଲେ । ଅନ୍ୟ ଦିନେ ମିଶ୍ରଙ୍କ ସଙ୍ଗରେ ଢେର କଥା କହନ୍ତି, ଆଜି ପାଟି ଫିଟିବାର ନାହିଁ, ଭୁନ ହୋଇ ଗମ୍ଭୀର ଭାବରେ, ହାକମୀ ଧରଣରେ ବସିଛନ୍ତି । ମିଶ୍ରେ କିଛିକ୍ଷଣ ବସି ଜମାଦାରଙ୍କର ଢେର ପ୍ରଶଂସା କଲେ । ସେ ଯେ ଗୁରଖଣ୍ଡ ଗ୍ରାମରେ ହର୍ତ୍ତା କର୍ତ୍ତା ବିଧାତା, ସମସ୍ତଙ୍କ ମାନ ମହତ ତାଙ୍କ ହାତରେ, ସେ ମାରି ପାରନ୍ତି ତାରି ପାରନ୍ତି ଇତ୍ୟାଦି ଇତ୍ୟାଦି ଢେର ପ୍ରଶଂସା କଲେ । ଜମାଦାର ନୀରବ । ମିଶ୍ରଙ୍କୁ ମଧ୍ୟ ମାମଲତ କିଛି ଜଣା । ଦୁଇ ଗୁରଥର ହାଇ ମାରି ଗୁରଆଡ଼କୁ ଅନାଇ ଦ୍ୱମାକୁ ଛାଡ଼ି ଦେଲେ ଦଶଟଙ୍କା ଇଶାରାରେ ଶୁଣାଇଲେ । (ଆଉ ମାମଲା ହୋଇଥିଲେ ଜମାଦାର କଣ କରିଥାନ୍ତେ, ଆମ୍ଭେମାନେ କିଛି କିଛି ଅନୁମାନ କରିପାରୁଁ; ମାତ୍ର ଏ ଯେ ଦ୍ୱମା କଥା—ବଦମାଏସ ଗୁଣା କାର୍ଯ୍ୟ କରିଛି, ମହତ ଉପରେ ବର୍ତ୍ତୀ ) । ଜମାଦାର ଭାରି ଖପା ହୋଇ ରଙ୍ଗା

ଆଖିରେ ମିଶ୍ର ଅଡ଼କୁ ଅନାଇ କହିଲେ, "ତୁ କି ରକମ ଗୋସେଇଁ ରେ ? ମୋତେ କି ଆଉ ହାକିମ ପାଇଲୁ ?" ମିଶ୍ରେ ତ ଏକାବେଳକେ ବସିଗଲେ — ସରକାରୀ ଲୋକ, କେଜାଣେ କଣ କରି ପକାଇବ ରେ ବାପା ! କିଛିକ୍ଷଣ ବସି ଖୁବ୍ ଗୋଟାଏ ନିଶ୍ୱାସ ପକାଇ ଧୀରେ ଧୀରେ ଉଠି ଚାଲିଗଲେ ।

ପରଦିନ ଖୁବ୍ ସକାଳେ ରାମା ଡାହାଣ ଡେଣାରେ ରସିଲଗା, ବାଁ କାନ୍ଧରେ ଚେରିବ ଲୁଣହାଣ୍ଡି । ଦିଗବାର ଶଙ୍କର ମଲିକ ଡାହାଣ କାନ୍ଧରେ ଠେଙ୍ଗା ବାଁ ହାତରେ ରାମା ବନ୍ଧା ଦଉଡ଼ିମୁଣ୍ଡ । ଜମାଦାରେ ଡ୍ରେସ ପିନ୍ଧି ଛତି ଧରିଲାଇ ଗାଁ ମଝି ଗୋହିରୀରେ ବାଲେଶ୍ୱର ସଦର କଚେରୀକୁ ରବାନା ହେଲେ । ଜମାଦାରଙ୍କ ମନରେ ଖୁବ୍ ଫୂର୍ତ୍ତି, ଚଞ୍ଚଳ ଚଞ୍ଚଳ ଗୋଡ଼ ପଡ଼ୁଛି । ଦିଗବର କିଛି ପଛରେ ପଡ଼ିଗଲେ ତାହାକୁ ଧମକାଇ କହୁଅଛନ୍ତି, "ଚଞ୍ଚଳ ଚାଲ, ଦହିଲ୍ କଚେରୀରେ ହାଜର ହେବାକୁ ପଡ଼ିବ ।"

ମହାମପୁରଠାରୁ ସଦର କଚେରୀ ଉଣା ଅଧିକରେ ସାତକୋଶ ଦୂର; ମାତ୍ର ଜମାଦାରେ ଆସାମୀକୁ ଧରି ବାରେ ଉପରେ ଯୋଡ଼ାଏ ବାଜେ କଚେରୀରେ ପହୁଞ୍ଚିଗଲେ । ମନ ସଙ୍ଗରେ ଗୋଡ଼ର କପରି ସମ୍ବନ୍ଧ ଅଛି, ଆମ୍ଭମାନଙ୍କୁ ଅଜଣା । ଯେହେତୁ ମନୋବିଜ୍ଞାନ ଶାସ୍ତ୍ରରେ ଆମ୍ଭେମାନେ ନିପଟ — ଇତ୍ୟାଦି, ହେଲେ ଦାର୍ଶନିକ ଲୋଡ଼ିବାର ଦରକାର ନାହିଁ । ଜମାଦାରଙ୍କ ପଦ ଯୁଗଳର ଶୃଙ୍ଖଳା ପ୍ରତ୍ୟକ୍ଷରେ ତାହାଙ୍କ ମନରେ ଶୃଙ୍ଖଳା, ଫୂର୍ତ୍ତି ଅନୁମାନ କରି ନେଲୁଁ । ଜମାଦାରେ କଚେରୀରେ ପହୁଞ୍ଚି ଚିହ୍ନା ଅଚିହ୍ନା ଢେର ଅମଲା ଫଏଲଙ୍କୁ ନମସ୍କାର କରିଗଲେ । ପେସ୍କାରଙ୍କୁ ଜୁହାରଟାଏ କରି ମାମଲା ଆସାମୀର ହାଲ ଚୁମ୍ବକ ଚୁମ୍ବକ ସବୁ ଜଣାଇଦେଲେ । ମେଜେଷ୍ଟର ସାହେବଙ୍କ ନିକଟରେ ରିପୋର୍ଟ ପେଶ ହେଲା । ଆସାମୀ ନାଜରଖାନା ବାଟେ ହାଜତକୁ ଚାଲାଣ ହେଲା । ବରାମଦି ମାଲ ରହିଲା ନାଜରଖାନାରେ ଦାଖଲ । ମାମଲା ଡେଃ ମାଜିଷ୍ଟର ମୌଲବୀ ଅବଦୁଲ ମିଆଁଙ୍କୁ ସପ୍ରୋଦ ହେଲା । ତାରିଖ ପଡ଼ିଲା ଆସନ୍ତା ପାଞ୍ଚ ତାରିଖ ଶୁକ୍ରବାର ।

କଚେରୀବାହୁଡ଼ା ଜମାଦାରେ ଆସି ପେସ୍କାରଙ୍କ ବସାରେ ରହିଲେ, ଦିଗବର ମଧ୍ୟ ରହିଲା । ମାମଲା ତାରିଖ ଆଜ ଲଗାଏତ ଚାରିଦିନ । ଆଜ ଦିନଟା ତ ଗଲା—ତାରିଖ ଦିନ ମାମଲା ପଡ଼ିବ, ମଝିରେ ଯୋଡ଼ାଏ ଦିନ,

ଫାଣ୍ଡିକୁ ଯାଇ ଆସିହେବ ନାହିଁ । ଜମାଦାରେ ପେସ୍କାରଙ୍କ ବସାରେ ଥାଆନ୍ତି । ଭୁଛାଟାରେ ହେଲେ ଦଶଥର ଡ଼ାକ ହାକମି ବୋଲରେ ଦଗବାରକୁ ନାନା ଫରମାସ ବଢ଼ାଉଥାନ୍ତି; ଅର୍ଥାତ୍ ଜମାଦାର ଡାକଲେ ଦଗବାର ଯେ 'ଆଜ୍ଞା ହଜୁର' କହେ, ତାହା ଲୋକେ ଶୁଣନ୍ତୁ, ଆଉ ତାହାଙ୍କ ତାବେ ଯେ ଲୋକେ ଅଛନ୍ତି, ଏହା ସମସ୍ତେ ଜାଣନ୍ତୁ ।

ରାତି ଅନ୍ଦାଜ ଏକପ୍ରହର । ପେସ୍କାର କାମ୍ରାର ଭିତରେ ଗୋଟାଏ ସଉପ ମଶିଣା ମେଲାଇ ବସିଛନ୍ତି । ଆଗରେ ଗୋଟାଏ ଧାପରଖା ଉପରେ ମାଟି ଦୀପଟାରେ ବଳତାଟା ମିଟି ମିଟି କରି ଜଳୁଛି । ପେସ୍କାରଙ୍କ ଆଗରେ ନଥିପତ୍ର କାଗଜଗୁଡ଼ାଏ ବୁଣିପଡ଼ିଛି । ପେସ୍କାର ନଥିର ହେରଫେର ଖୁବ୍ ମନଯୋଗୀ ହୋଇ ସଜାଡ଼ିବାରେ ବ୍ୟସ୍ତ । ଜମାଦାର କଣାରାମ ସିଂ ପିଣ୍ଡାରେ ଚକାମାଡ଼ି ଭୁନ ହୋଇ ବସିଛନ୍ତି । ଦଗବାରଟା ଓଳତଳେ ବସି ଜମାଦାରଙ୍କୁ ଚାହିଁଛି, କେତେବେଳେ କଣ ହୁକୁମ ହେବ । ଗୋଷେଇଆ ପିଲା ଚୁଲି ଲଗାଇବାରେ ବ୍ୟସ୍ତ, ଚୁଲିମୁହଁରେ ଲୁଣ୍ଡା ପକାଇ ଫୁଙ୍କୁଛି, ଠିକ୍ ଏହି ସମୟରେ ଶବ୍ଦ ହେଲା, "ହରିବୋଲ—ହରିବୋଲ—ପେସ୍କାରବାବୁଙ୍କର ମଙ୍ଗଳ ହେଉ, ଜୟ ଜୟକାର ହେଉ ।"

ପେସ୍କାରେ ଭୁଣ୍ଡି ବାରି ଘରୁ ବାହାରିପଡ଼ିଲେ । "ଆସିବା ହେଉ ରଥେ, ଆସିବା ହେଉ," କହି ଓଳଗିଟାଏ କଲେ । ଗାଁର କୁଶଳ ମଙ୍ଗଳ ପଚାରିଲେ । ଆଗନ୍ତୁକ ଲୋକର ନାମ ପୁରୁଷୋତ୍ତମ ରଥେ, ପେସ୍କାରବାବୁଙ୍କ ପୁରୋହିତ, ଏକା ଗାଁରେ ଘର । ରଥଙ୍କ ପୁଅ ଭିକା ପେସ୍କାରବାବୁଙ୍କ ଗୋଷେଇଆ । ମୁଖ ଦେଖାହେବ, ବଜାର ସଉଦା ହେବ, ଆଉ ରୋଜଗାରିଆ ଯଜମାନ; କେବେ କେବେ କିଛି ପ୍ରାପ୍ତିର ଆଶା ମଧ୍ୟ ଥାଏ । ଏଥିସକାଶେ ରଥେ ମାସକୁ ଥରେ ଦୁଇଥର ସହରକୁ ଆସିଥାଆନ୍ତି । ପେସ୍କାରଙ୍କ ସହିତ କଥା ସମାପ୍ତ ଉତ୍ତାରେ ରଥେ ଚାରିଆଡ଼କୁ ଚାହିଁଲେ । ଆଜି କିଛି ନୂଆ ନୂଆ ଜଣାଗଲା; ଆଗେ ପହଞ୍ଚିବାମାତ୍ରେ କଣା ଭୂଇଁରେ ମୁଣ୍ଡି ଆଟାଏ ମାରି ଗୋଡ଼ ଧୋଇବାକୁ ପାଣି ଢ଼ାଳେ ଆଣି ଦିଏ—ଆଜି ଉଠୁନାହିଁ କାହିଁ ? ଆଉ ସମ୍ଭାଳି ନ ପାରି ଡ଼ାକଟାଏ ଦେଲେ, "ରେ କଣା ! ରେ କଣା !" କିଛି କିନ୍ତୁ ନିରୁତ୍ତର । ବ୍ରାହ୍ମଣ ମନ ନକିଳିଲା, ଅଳପକେ ତାଇଯାଏ । କିଛି ଖପା ବୋଲରେ ଡ଼ାକଲେ, "ରେ କଣା !" ଉପସ୍ଥିତ କ୍ଷେତ୍ରରେ ରଥଙ୍କ କ୍ରୋଧ କରିବା ଖୁବ୍ ଅନ୍ୟାୟ । କାରଣ ରଥଙ୍କ ଆବିର୍ଭାବ ବିଷୟ କଣାରାମ ସିଂହଙ୍କର

ଅଜ୍ଞାତବ୍ୟ, ଏ କଥା ଆମ୍ଭେମାନେ ଦୃଢ଼ରୂପେ ବୋଲିପାରୁଁ । ସିଂହେ ସେ ସମୟରେ ନାନା ଚିନ୍ତାରେ ମନ ସଂଯୋଗ କରିଥିଲେ । କିପରି ରାମା ବାପୁଡ଼ା ଜେଲ୍ ଯିବ, ଫାଣ୍ଡିକି ଯାଇ କିପରି ନୂଆ ରକମ ଜାହିର କରିବେ, ସରକାରଙ୍କଠୁ କିପରି ଖୁସ୍‌ନାମ ମିଳିବ, ଆଉ ଦୁଇ ଗୋଟି ନମ୍ବର ମାମଲା ଚାଲାଣ ହେଲେ କିପରି ଜମାଦାରୀ ପାଇବେ ଇତ୍ୟାଦି ନାନା ଭାବନାରେ ମନ ଫୁଲି ଉଠୁଥିଲା । ମନୋବିଜ୍ଞାନ ଦାର୍ଶନିକ ପଣ୍ଡିତେ ବୋଲନ୍ତି, ମନ ଗୋଟାଏ ବିଷୟରେ ସଂଲଗ୍ନ ଥିଲେ ଅନ୍ୟ ବିଷୟ ଧାରଣା କରିପାରେ ନାହିଁ । ସିଂହଙ୍କ ମନ ବର୍ତ୍ତମାନ ଗୋଟାଏ ନୁହେ; ପୁଞ୍ଜାଏ ପାଞ୍ଚଟା ବିଷୟରେ ସଂଲଗ୍ନ— ଏଥିକି ସେ ରଥଙ୍କ ଡାକିବା ଶୁଣିପାରିଲେ ନାହିଁ ବୋଲି ତାହାଙ୍କୁ ଦୋଷୀ କରିଯାଇ ନ ପାରେ; ମାତ୍ର ବ୍ରାହ୍ମଣ ବାପୁଡ଼ା ତାହା ବୁଝିଲା ନାହିଁ । ପୁନର୍ବାର—"ଟିକି କିଣା, ଟିକି କିଣା ! ପାଣି ଢାଳେ ଦେ ଗୋଡ଼ ଧୋଇବି ।" ସିଂହେ ଚମକିପଡ଼ି ରଥଙ୍କୁ ଚାହିଁଲେ, ପୁଣି ହାବିଲଦାର ଉପରେ ନଜର ପଡ଼ିଗଲା । 'ରେ କିଣା, ପାଣି ଢାଳେ ଦେ ଗୋଡ଼ ଧୋଇବି ।' ଅବଶ୍ୟ ହାବିଲଦାର ଶୁଣିଲା । ରଥଙ୍କ କ୍ରୋଧର କାରଣ ଯେପରି ଅହେତୁକ, ସିଂହଙ୍କର କ୍ରୋଧ ସେହିପରି କାରଣସଙ୍କୁଳ ଅଟେ । ସିଂହେ ମଧ୍ୟ ସେହିପରି ଖପାଇ ସ୍ୱରରେ ଜବାବ ଦେଲେ, "କିପରି ଅଖାଡ଼ୁଆ ଗୋସେଇଁ ହେ, ଟିକିଏ ଚର ସହୁନାହିଁ ?"

"କଣ ବୋଇଲୁ ? କଣ ବୋଇଲୁ ? ଅଖାଡ଼ୁଆ !" ରଥଙ୍କର ଛ ଅଣ୍ଟି ଫିଟିବାକୁ ବସିଲାଣି । ପେସ୍କାର ସବୁ ଶୁଣୁଥିଲେ, ଧାଇଁଆସି ଥାମଥୁମ କରିଦେଲେ । ନକିତଳି ତାନ୍ତ ବେଶୀ ବେଳଯାଏ ରହେନାହିଁ । ରଥେ ଗୋଡ଼ ଧୋଇ ପେସ୍କାରଙ୍କ ବିଛଣାରେ ବସିଲେ । ମନଟାକୁ ଥଣ୍ଡା କରିବାପାଇଁ ଅଣ୍ଟିରୁ ନାସଦାନଟା ବାହାର କଲେ । ପେସ୍କାରଙ୍କ ସହିତ କଥୋପକଥନ ଆରମ୍ଭ; ଏଣୁତେଣୁ କଥା ଉତ୍ତାରେ କିଣୁ ବାରିକର କନଷ୍ଟବଲୀ, ଗ୍ରେଫ୍-ଚାଲାଣ ଇତ୍ୟାଦି କଥା ଶୁଣିଲେ । ରଥେ ଶୁଣିସାରି କହିଲେ, "ଓଃ, ଏହିଁକି ଏତେ ?—ପୂନର୍ମୂଷିକୋଭବ ।"

ରାମ ବାରିକ ଚାଲାଣ ହୋଇ ଆସିବା ଦିନଠାରୁ ଗୋପାଳପୁର ପ୍ରଭୃତି ଚାରିଖଣ୍ଡି ଗ୍ରାମରେ ମାଡ଼ିଟି ମରିଯାଇଛି । ସବୁ ପାଇଟି ବନ୍ଦ, କାହାରି ମନରେ ସୁଖ ନାହିଁ । ଘରପିଛା ଭେଦା ଉଠିଲା । ଗୋପାଳ ଘଡ଼େଇ ଟଙ୍କା ଠୁଳକରି ଧରି ଅଣ୍ଟାଭିଡ଼ି ବାହାରିଲେ । ସଙ୍ଗରେ ଗ୍ରାମର ମାଉସୀପୁଅ ଭାଇ ମକା ବାରିକ

ଆଉ ହଗୁ ସାମଲ ଏହି ଦୁଇଜଣ । ଗୋପାଳ ଘଡ଼େଇ ଜଣେ ମାମଲତକାର ଲୋକ, ଗୃହଖଣ୍ଡ ଗାଁରେ ତାହାର ନାମ ଡାକ । ଆଗେ ତାହାର ତିନଖଣ୍ଡ ଚୁଲ୍ଲୀ ଥିଲା । ଗୃହହଳ ଜମି ଚାଷ, ଶ'କଡ଼ା ଟଙ୍କା ଫେର ଫାର ଚଳେ । ସହରକୁ ଯିବା ଆସିବାରେ ଆଇନ୍-କାନୁନ୍ କଥା ତାହାକୁ ଭଲ ଜଣା; ତଥାପି ସେ ରୱାନା ସମୟରେ ତାଙ୍କ ପଛରେ ଗୃହଜଣ ମୁରବି ଭଳିଆ ଲୋକ ଅଧକୋଶଯାଏ ଗୋଡ଼ାଇଯାଇ ନାନା ପ୍ରକାର ଉପଦେଶ ଦେଲେ । ବାହୁଡ଼ି ଆସିବା ସମୟରେ ଅବଧାନେ ବନମାଳୀ ଓଝା କହିଲେ, "ଯାଅ ଘଡ଼େଇପୁଅ 'ଶ୍ରୀ ମଧୁସୂଦନ, ଶ୍ରୀ ମଧୁସୂଦନ' କହି ଚାଲିଯାଅ । ମୁଁ ଯେ ଦିନ ଦେଇଛି, ତାହା ନ ମେଣ୍ଟିବ ।"

ଅଜି ମାମଲାର ତାରିଖ । ଜେଲଖାନା ହାଜତ ଆସାମୀସବୁ ଚାଲାଣ ହୋଇ ଆସି ନାଜରଖାନାରେ ବସିଛନ୍ତି । ଗୋପାଳ ଘଡ଼େଇ କଚ୍ଛ ଅଣ୍ଟାଗୁଞ୍ଜା ବଳରେ ହାଜତ ଜାଏଗା ଦୁଆର ପର୍ଯ୍ୟନ୍ତ ଗଲା । ତାହାର ହାତ ବୁଢ଼ା ଆଙ୍ଗୁଳି ଓ ମୁଣ୍ଡ ନାନା ଭଙ୍ଗିରେ ସଞ୍ଚାଳନ କରି ରାମାକୁ ଇସାରା କଲା । ରାମା ହାଜତରେ ରହି ଯାବତରେଇ ଯାଇଥିଲା, ତାହାକୁ ସେହି ଅବସ୍ଥାରେ ହାକିମଠାକୁ ଆଣିଥିଲେ କ'ଣ କରିଥାଆନ୍ତା କଥା ଅଜଣା; ମାତ୍ର ରାମା ମଫସଲ ଭଣ୍ଡାରୀ ହେଲେ କ'ଣ ହେବ, ପଣ୍ଡପଣ ଗସ୍ତି ହାକିମମାନଙ୍କୁ ବେଠିରେ ଖିଅର କରିକରି ମୁଣ୍ଡବାଳ ପାଚିଲାଣି । ଘଡ଼େଇକୁ ଦେଖି ଖୁବ୍ ହେମତ ବାନ୍ଧିଲା । ମୁଣ୍ଡ ହାତ ହଲାଇ ଘଡ଼େଇ କଥାରେ ଜବାବ ଦେଲା । ଘଡ଼େଇ କାମ ସାରି ଚାଲି ଛ'ହାତ ଚାଲି ଆସିବା ଉତ୍ତାରେ ପହରାବାଲା କନେଷ୍ଟବଳ ଡାକଦେଲା, "ତଫାତ୍ ତଫାତ୍ !" ଅର୍ଥାତ୍ ନାଜର ଜାଣନ୍ତୁ, ସେ ବାହାରିଆ ମଣିଷକୁ ହାଜତ ଆସାମୀ ପାଖ ପୂରାଇ ଦେଉନାହିଁ । ଘଡ଼େଇ ନାଜରଖାନାରୁ ଆସି ଉକିଲ ଅବଦୁଲ ସୋଭାନ ଖାଁଙ୍କୁ ଆସାମୀ ପକ୍ଷରୁ ଓକାଲତନାମା ଦେଲେ ।

ପ୍ରଥମ ଶ୍ରେଣୀ ଡେ଼ଃ ମାଜିଷ୍ଟ୍ରେଟ ମୌଲବୀ ଅବଦୁଲ ଖାଁଙ୍କ ମିସିଲରେ ପହିଲା ନମ୍ବର ଏହି ମାମଲା ଡାକରା ହେଲା । ମୌଲବୀ ସାହେବଙ୍କର କିଛି ପରିଚୟ ଦେବାର ଆବଶ୍ୟକ । ବିନା କାରଣରେ ଆମ୍ଭେମାନେ ଏହି ପରିଚୟ ଦେଉ ନାହୁଁ, ଆପଣମାନେ ଏକଥା ବୁଝି ପାରିବେ । ଅଜିକାଲି ସରକାର ଯେଉଁପରି ହାକିମଗୁଡ଼ାଙ୍କୁ ବଲେଇପିଲାପରି ଗୃହଆଡ଼େ ବୁଲାଇ ମାରୁଛନ୍ତି,

ଆଗେ ସେପରି ନ ଥିଲା । ଜଣେ ଜଣେ ହାକମ ଗୋଟାଏ ଗୋଟାଏ ଜିଲାରେ ଆଠ ଦଶ ବରଷ ରହି ଯାଉଥିଲେ । ମୌଲବୀ ଅବଦୁଲ୍ ଖାଁ ଆଜକୁ ଊଣାଅଧିକ ଦଶ ବରଷ ହେଲା ଏହି ଜିଲାରେ ଅଛନ୍ତି । ଘର-ଦୁଆର, ବାଗ-ବଗିଚା ଜାରି କରି ଦେଲେଣି, ସହରର ସମସ୍ତେ ମାନନ୍ତି । ମଫସଲରେ ମୌଲବୀ ହଦପୋଡି ବୋଲି ନାମ ଡାକ । ଉକିଲ, ମୁକ୍ତାର ବୋଲନ୍ତି ମୌଲବୀ ବହୁରରେ ପାଣି ଗଳିବ ନାହିଁ । ହେଲେ ଆମ୍ଭେମାନେ କିନ୍ତୁ ମୌଲବୀଙ୍କ ଗୋଟାଏ ଭାରି ଦୋଷ ବା ଗୁଣ କଥା ଜାଣୁ, ସେ ପୋଲିସ ଉପରେ ସବୁଦିନେ ଗୋସ୍ସା; ତାହାଙ୍କର କେମନ୍ତ ଗୋଟିଏ ଧାରଣା ହୋଇଥିଲା ଯେ, ପୋଲିସ ଅନେକ ସ୍ଥଳରେ ସଜାସଜ କରି ନିର୍ଦ୍ଦୋଷ ଆସାମୀକୁ ଚାଲାଣ ଦିଏ, ଏଥିପାଇଁ ଚାଲାଣି ମାମଲାରେ କିଛି ଟିକିଏ ବାଟ ପାଇଲେ ଆସାମୀକୁ ଖଲାସ କରି ଦିଅନ୍ତି ।

ହାକମ ମିସଲରେ ବସିବା ମାତ୍ରେ ପେସ୍କାରେ ବାଁ ହାତରେ ବଡ଼ାଏ ନଥି, ଡାହାଣ ହାତରେ ଦୁଆତ କଲମ ଧରି ମିସଲ ଆଗ ବେଞ୍ଚ ପାଖରେ ପହଞ୍ଚି, ଆଗ ବେଞ୍ଚରେ କାଗଜପତ୍ର ଥୋଇଦେଲେ । ହାକମଙ୍କୁ ଖୁବ୍ ମୁଣ୍ଡ ନୁଆଁଇ ସାଲାମ କରି ବେଞ୍ଚରେ ବସିଲେ ।

ହାକମ—ମାମଲା ପେସ୍ କର ।

ପେସ୍କାର—ହଜୁର, ପହିଲା ନମ୍ବର ମାମଲା ନମକ୍ସା ପୋଲିସ ଚାଲାଣି । ସରକାରତରଫ ମୁଦେଇ କନେଷ୍ଟବଲ କଣାରାମ ସିଂ । ମୁଦାଲା ରାମ ବାରିକ।

ଚପରାସୀ ପାଟି କରି ତିନିଥର ଡାକଦେଲା, "କଣାରାମ ସିଂ କନେଷ୍ଟବଲ ହାଜର ହୋ ।"

କଣାରାମ ସିଂ ହାକମଙ୍କୁ କନେଷ୍ଟବଲୀ ସଲାମ୍ ବଜାଇ ସାକ୍ଷୀ ବାକ୍ସ ଭିତରେ ଛିଡ଼ା ହେଲା । ନାଜରଖାନା କନେଷ୍ଟବଲ ଆସାମୀକୁ ହାଜର କରି ଦେଲା ।

ପେସ୍କାରଙ୍କ ପଢ଼ାଇବା ମାଫିକେ କଣାରାମ ସିଂ ସତ୍ୟପାଠ କରି ଇଜାହାର ଦେବାକୁ ଲାଗିଲା ।

ହାକିମ ମୁଦ୍ଦେଇର ନାମ, ବାପର ନାମ, ବୟସ ଇତ୍ୟାଦି ଦସ୍ତୁରମୁତାବକ ଲେଖି ସାରନ୍ତେ ଉତ୍ତାରେ ମୁଦ୍ଦେଇ ମାମଲାର ସମସ୍ତ ହାଲ ହାକିମଙ୍କ ସଓ୍ୱାଲ ମୁତାବକ ବୟାନ କରିଗଲା । ଜବାନବନ୍ଦ ଲେଖିସାରି ହାକିମ ମୁଦାଲା ତରଫ ଓକିଲଙ୍କୁ ପଚାରିଲେ, "କେରା କରିବ ?"

ଓକିଲ ସଲାମ୍ କରି କହିଲେ, "ହଁ, ହଜୁର ।"

ସଓ୍ୱାଲ ଓକିଲ—ଆସାମୀ ଯେ ଲୁଣ ପାଣି ଢାଳି ଦେଲା, କିଏ ଦେଖିଛୁ ?

ଜବାବ ମୁଦ୍ଦେଇ—ମୁଁ ଦେଖିଛୁ, ସେ ହାଣ୍ଡିରେ ପାଣି ପୂରାଇ ଚୁଲ୍ଲୀମୁଣ୍ଡ—

ଓକିଲ—ବସ ବସ, ମୁଁ ଯାହା ପଚାରିବି ସେଥିରେ ଜବାବ ଦିଅ, ଅଧିକ ଗୁଡ଼ାଏ ବକ ନାହିଁ । ମୁଁ ପଚାରୁଛି ଆଉ କେହି ଦେଖିଛି କି ନାହିଁ ? 'ହଁ' କି 'ନା' ଏତିକି ବୋଲ ।

ଜବାବ କଃ—ନା, ଆଉ କେହି ଦେଖି ନାହିଁ ।

ଓକିଲ ସଓ୍ୱାଲ—ସେ ଲୁଣି ଦହପାଣି ଢାଳି ଦେଲା କି ଭଲପାଣି ଢାଳି ଦେଲା, କିପରି ଜାଣିଲ ?

ଜବାବ କଃ—ମୁଁ ଗୁଇନ୍ଦାଠାରୁ ସନ୍ଧାନ ପାଇ ଯାଇ ଧରିଛି ।

ସଓ୍ୱାଲ ଓକିଲ—ଧରିଛ ତ ହଁ—ଲୁଣପାଣି ଢାଳିଲା ବୋଲି କିପରି ଜାଣିଲ ?

ଜବାବ କଃ—ମୁଁ ମାଟି ଚାଖି ଦେଖିଛି, ଲୁଣିଆ ଲାଗିଲା ।

ଓକିଲ—ବର୍ତ୍ତମାନ ଥରେ ଚାଖ ।

କନେଷ୍ଟବଳ ବରାମଦ ମାଟି କଞ୍ଚିତ୍ ହାଣ୍ଡିରୁ ଉଠାଇ ଚାଖିଲେ, କହିଲେ; "ଦେଖନ୍ତୁ ଲୁଣିଆ ଲାଗୁଛି ।"

ଓକିଲ—ଆଉ ଥରେ ବେଶୀ କରି ଚାଖ ।

କନେଷ୍ଟବଳ—କିଞ୍ଚିତ୍ ଗୋଟା ନେଇ ଖୁବ୍ ବଡ଼ାଏ ମାଟି ପାଟିରେ ପୂରାଇ ଦେଲେ । ମିସଲରୁ ଓହ୍ଲାଇ ଯାଇ ଥୁ ଥୁ କରି ବାହାରେ ଫିଙ୍ଗି ଦେଲେ । ମିସଲକୁ ଆସି ଓକିଲଙ୍କୁ ଖୁବ୍ ଦେମତରେ କହିଲେ, "ଦେଖ, ମାଟି ଖୁବ୍ ଲୁଣିଆ ।"

ଉକିଲ ମୁହଁରେ ରୁମାଲ ଦେଇ ହସିଲେ ଆଉ କିଛି ପଚାରିଲେ ନାହିଁ ।

ମୁଦେଇ ତରଫ ସାକ୍ଷୀ ହଗବାର ଶଙ୍କୁ ମଲକର ନାମ ଧାମ ହାକମ ଲେଖିବା ଉତ୍ତାରେ, ପେସ୍କାର ସତ୍ୟପାଠ ପଢ଼ାଇଲେ ।

ସଓ୍ୱାଲ—କନେଷ୍ଟବଲ ଆସାମୀକୁ ଗ୍ରେପ୍ତାର କରିବାବେଳେ ତୁ ପାଖରେ ଥିଲୁ ?

ଜବାବ ଶଙ୍କୁ ମଲକ—ହଁ, ମୁଁ ପାଖରେ ଥିଲି ।

ସଓ୍ୱାଲ—ଆସାମୀ ସାମା ଲୁଣ ମାରିବାପାଇଁ ହାଣ୍ଡିରେ ଦହପାଣି ରଖିଥିଲା, ତୁ ଜାଣୁ ?

ଜବାବ—ହଁ, ମୁଁ ଜାଣେ ।

ସଓ୍ୱାଲ—ଆସାମୀ ନାଳମୁହଁରେ ପାଣି ଢ଼ାଳି ଦେଲା, ତୁ ଦେଖିଛୁ ?

ଜବାବ—ଆଜ୍ଞା ଆଜ୍ଞା, ହୁଁ ହୁଁ ସାମା ପାଣି ଫୋପାଡ଼ି ଦେଲା । ସେ ଲୁଣ ମାରେ ।

ମୁହାଲତରଫ ଉକିଲ ସଓ୍ୱାଲ—ସାମା ପାଣି ଢ଼ାଳି ଦେଲାବେଳେ ତୁ ପାଖରେ ଛିଡ଼ା ହୋଇ ଦେଖିଛୁ କି ନା ?

ଜବାବ—ନା, ମୁଁ ଦାଣ୍ଡରେ ଛିଡ଼ା ହୋଇଥିଲି । ଜମାଦାର କହୁଥିଲେ, ମୁଁ ଶୁଣିଛି ।

ହାକମ କିଣାରାମ ସିଂକୁ ପଚାରିଲେ, "ତୁମର ଆଉ କେହି ଗୁହା ଅଛି ?"

କିଣାରାମ କହିଲେ—ମୁଁ ସରକାରୀ ପୋଲିଶ—ନଜେ ଆଖିରେ ଦେଖିଅଛି । ଆଉ ଗୁହା କ'ଣ ?

ହାକମ ଏ କଥା ଶୁଣି ମୁରକି ହସିଲେ ।

ମାମଲା ପ୍ରମାଣ କରାଇବାପାଇଁ ସାକ୍ଷୀ ପ୍ରୟୋଜନ, ଏ କଥା କିଣା-ରାମଙ୍କୁ ଜଣା ନ ଥିଲା ।

ଏ ଉତ୍ତରରେ ଆସାମୀର ଜବାବ ନଆଗଲା ।

ଆସାମୀ ଘମ ବାଉରିର ନାମ ଧାମ ହାକମ ଲେଖି ନେଲା ଉତ୍ତାରେ, ତାହା ବିଷୟରେ ଅଣା ଯାଇଥିବା ଅଭିଯୋଗ ସଂକ୍ଷେପରେ ବୁଝାଇ ଦିଆଗଲା ଉତ୍ତାରେ ହାକମ ପଚାରିଲେ, "ତୁ ଦୋଷୀ କି ନିର୍ଦ୍ଦୋଷୀ ?"

ଜବାବ ଆସାମୀ ଘମ ବାଉରି—ମୁଁ ନିର୍ଦ୍ଦୋଷୀ ।

ହାକମ—ତେବେ କି ସକାଶେ ପୋଲିସ ତୋତେ ଚାଲାଣ ଦେଲା ?

ଜବାବ—ଆଜ୍ଞା, ମୁଁ ଜମାଦାରଙ୍କର ବେଠି ନ କରିବାରୁ ସେ ମୋ ହାତରେ ଅଧ ହାଣ୍ଡିଏ ମାଟି ଦେଇ ବାନ୍ଧି ନେଇ ଆସିଅଛନ୍ତି ।

ସଓ୍ୱାଲ—ତୋତେ କିପରି ବାନ୍ଧି ଆଣିଲେ ?

ଜବାବ—ଆଜ୍ଞା ମୁଁ ଘରେ ଶୋଇଥିଲି । ମୋ ଘରେ ପଶି ଖୁବ୍ ମାରିଲେ ଓ ମାରି କରି ବାନ୍ଧି ଆଣିଲେ ।

ସଓ୍ୱାଲ—ତୁ ଦିନବେଳେ ଶୋଇଥିଲୁ ?

ଜବାବ—ଆଜ୍ଞା ମୋତେ ଜ୍ୱର ହୋଇଥିଲା—ନା ନା, ମୋ ପେଟ ଟାଣୁଥିଲା, ମୁଁ ଶୋଇଥିଲି ।

ସଓ୍ୱାଲ—ତୋହର ସଫାଇ ଗୁହା ଅଛି ?

ଆସାମୀ ଘମ ବାଉରି ଜବାବ ଦେବାପୂର୍ବରୁ ଉକିଲ ଚଟ୍‌କରି କହି ପକାଇଲେ, "ଆଜ୍ଞା ହଜୁର ! ଦୁଇଜଣ ସଫାଇ ଗୁହା ଅଛନ୍ତି ।"

ଆସାମୀ ତରଫ ପ୍ରଥମ ସାକ୍ଷୀ—

ମକର ବାଉରି, ଡାକନାମ ମକା । ବାଉରିର ନାମ ଧାମ ଫାରମ ପୂର୍ତ୍ତି କରି ପେସ୍କାର ହଲଫ ଦେଲେ ।

ସଓ୍ୱାଲ—ତୁ ଏ ମାମଲାରେ କ'ଣ ଜାଣୁ ?

ଜବାବ ମକର ବାଉରି—ଆଜ୍ଞା ମୁଁ ଜାଣେ, ଘମ ଲୁଣ ମାରି ନାହିଁ । ତାହାର ଝାଡ଼ା ହେଉଥିଲା, ଘରେ ଶୋଇଥିଲା, ଲୁଣ ମାରିଲା କେତେବେଳେ ?

ମୁଦାଲାତରଫ ଓକିଲ ସଓ୍ୱାଲ—ତୁମ୍ଭ ଗ୍ରାମଲୋକେ ଲୁଣ କେଉଁଠାରୁ ଆଣି ଖାଅ ?

ଜବାବ—ଆଜ୍ଞା,ହାଟରୁ ବରେବର ବଲେଇତ ଲୁଣ କିଣି ଆଣି ଖାଉଁ ।

ସଓ୍ୱାଲ—ରମା ହାଟରୁ କଣେ କ ନାହିଁ ?

ଜବାବ—ବରୋବର ।

ସଓ୍ୱାଲ— ବରୋବର କ'ଣ ରେ ? ଅରେ ରମା ହାଟରୁ ଲୁଣ କିଣି ଆଣେ, ତୁ ଆଖିରେ ଦେଖିଛୁ କି ନା ?

ଜବାବ—ରମା ହାଟରୁ ବରୋବର ଲୁଣ କିଣି ଆଣେ, ମୁଁ ଆଖିରେ ଦେଖିଛି ।

ସଓ୍ୱାଲ—କନେଷ୍ଟବଲ ରମା ଉପରେ ରାଗିଥିଲା କି ନା ?

ଜବାବ—ଆଜ୍ଞା ହଜୁର,ବରୋବର ରମା ଜମାଦାର ଅଇଣ୍ଠା ବାସନ ନ ମାଜିବାରୁ ତା ଉପରେ ଆଜକୁ ଆଠ ଦିନ ତଳେ ବଡ଼ ରାଗିଥିଲେ । ତାକୁ ଜେଲ ଦେବାକୁ କହିଥିଲେ । ରମାକୁ ବାନ୍ଧି ପକାଇ ଢେ଼ର ମାରିଲେ । ରମା 'ବାପରେ ମା'ରେ' ପାଟି କରୁଥାଏ ।

ସରକାରତରଫ କୋର୍ଟ ଇନ୍‌ସପେକ୍ଟର ସଓ୍ୱାଲ—

ରମାକୁ କନେଷ୍ଟବଳ ମାରିବା ତୁ ଦେଖିଛୁ ?

ଜବାବ—ଆଜ୍ଞା ନା, ମୁଁ ଶୁଣିଛି ।

ଦୁସରା ନମ୍ବର ସାକ୍ଷୀ ହରି ସାମଲ ପ୍ରଥମ ସାକ୍ଷୀ ଯାହା କହିଥିଲା, ଠିକ୍ ସେମିତି ସମସ୍ତ କଥା ବୟାନ କଲା ।

ନଥି ପ୍ରସ୍ତୁତ ହେଲା ଉତ୍ତାରେ ଆସାମୀତରଫ ଉକିଲ ଅବଦୁଲ ଶୋଭାନ ଖାଁ ହାକିମଙ୍କୁ ଗୁହିଁ ଯେଉଁ ବକ୍ତୃତା କରିଥିଲେ, ସେଥିର ସାର ମର୍ମ—

ଉକିଲର ବକ୍ତୃତା—

"ହଜୁର୍ ଏ ମାମଲା ତମାମ୍ ଝୁଠା ଓ ଫରେବ । ମୁଦେଇ କଣାରାମ ସିଂ ଜାତିରେ ଭଣ୍ଡାରୀ, ଆସାମୀ ମଧ୍ୟ ଭଣ୍ଡାରୀ, ଆସାମୀ ତାହାର ସଙ୍ଗୁଡ଼ି ନ ମାଜିବାରୁ ସେ (ମୁଦେଇ) ବଡ ରାଗିଥିଲେ, ଆସାମୀକୁ ଜବଦ କରିବା ଓ ହସ୍ନରାଣ କରିବା ମତଲବରେ ଏହି ମାମଲା ରଜ୍ଞନା କରିଅଛି ।

୨ୟ । ନଥିରୁ ସଫା ପ୍ରକାଶ, ମୁଦାଲା ହାଟରୁ ଲୁଣ କିଣି ଖାଏ, ସୁତରାଂ, ତାହାର ଲୁଣ ମାରିବା ଦରକାର ନଥିଲା ।

୩ୟ । ଗ୍ରେପ୍ତାର ସମୟରେ ଆସାମୀ ବେମାର ହାଲତରେ ବିଛଣାରେ ଶୋଇଥିଲା । ବେମାର ଲୋକ କେବେ ଲୁଣ ମାରି ନ ପାରେ ।

୪ର୍ଥ । ସ୍ୱାକାରୀ ହଇବାର କନଷ୍ଟବଳ ସଙ୍ଗରେ ଥିଲା, ଆସାମୀ ଲୁଣ ମାରିଥିଲେ ସେ ଦେଖି ଥାଆନ୍ତା ।

୫ମ । ଆସାମୀ ଯେଉଁ ବରାମଦ ମାଟି ଦାଖଲ କରିଅଛି, ତାହା ମୁଦାଲା ନାଳମୁହଁରୁ ଆଣିଥିବା ସତ୍ୟ ଅଟେ । ସେ ମାଟି ଯେ ଲୁଣିଆ ଲାଗୁଅଛି, ସେଥିର କାରଣ ଏହି କି ଯେ, ମଫସଲ ଲୋକମାନେ ରାସ୍ତାର ଉପରେ ଦାଣ୍ଡକୁ ବାହାରନ୍ତି ନାହିଁ । ମାଟି ବାହାର ନାଳ ଦୁଆରର – ଇତ୍ୟାଦି, ଇତ୍ୟାଦି । ସେହି ପାଣି ପଡ଼ି ପଡ଼ି ମାଟି ଲୁଣିଆ ହୋଇ ଯାଇଅଛି । ଏ କଥା ସତ୍ୟ କି ମିଥ୍ୟା ମୁଦେଇ କଣାରାମ ଆଉଥରେ ମାଟି ଚାଖୁ ଓ ଶୁଙ୍ଘୁ, ସେପରି ଉପମୁଳିଆ ଗନ୍ଧ ଅଛି କି ନାହିଁ, ସଫା ଜଣାଯିବ ।

ଉକିଲ ବକ୍ତୃତା ଶୁଣି ହାକିମ ଠୋ ଠୋ କରି ହସିଲେ । ପେସ୍କାରେ ହାକିମ ଆଡକୁ ନଥି ଉହାଡ଼ କରି ଖୁବ୍ ଗୋଟାଏ ହସିଲେ, ଆଉ ସମସ୍ତେ ମଧ୍ୟ ମୁହଁରେ ଲୁଗା ଦେଇ ହସିଲେ । ତହିଁ ଉତ୍ତରେ ଉକିଲ ଛିଡା ହୋଇ ହାକିମଙ୍କୁ ଅନାଇ କହିଲେ, " ହଜୁର୍ ମା ବାପ ଖାମିନ୍; ଆସାମୀ ନିହାତି ଗରିବ, ନିର୍ଦ୍ଦୋଷୀ, ତାହାକୁ ଖଲାସ ଦିଆଯାଉ ।"

ହାକିମ ଦୁଇ ଫର୍ଦ୍ଦ ଫୁଲସ୍କେପ କାଗଜରେ ଏକ ଲମ୍ବା ରାୟ ଲେଖିଲେ—ଉକିଲ ଯେଉଁ ସମସ୍ତ କାରଣ ଦର୍ଶାଇଥିଲେ, ରାୟରେ ସେ ସମସ୍ତ କାରଣ ଉଲ୍ଲେଖ କରି ଆସାମୀକୁ ଖଲାସ ଦେଲେ, ଅଧିକନ୍ତୁ ଲେଖିଲେ ମୁଦେଇ କଣାରାମ ସିଂ ପୋଲିସ କର୍ମର ଅଯୋଗ୍ୟ ।

ରାସ୍ତୁର ଏକପ୍ରସ୍ତ ନକଲ ଶ୍ରୀଯୁକ୍ତ ମାଜଷ୍ଟର ସାହେବଙ୍କ ହଜୁରରେ ପେସ ହେଲା । ଏ ଯାହା କଣାରାମଙ୍କର ନୌକଣ ରକ୍ଷା ପାଇବା କଠିନଥିଲା, ମାତ୍ର ପେସ୍କାର ହାକିମଙ୍କୁ ସମଜାଇ ଦେଲେ, "ହଜୁର ପୋଲଣ ନୂଆ, ଗ୍ରାମଲୋକେ ଏକଯୋଟ, ସମସ୍ତେ ବଦମାଏସ, ସର୍ବଦା ଲୁଣ ଚୋରିକର ସରକାରଙ୍କ ନୋକସାନ କରୁଅଛନ୍ତି, ପୋଲଣକୁ ଡିସ୍‌ମିସ୍ କଲେ ସରକାରୀ ଲୁଣ ବରବାଦ ହୋଇଯିବ । ଏହି ପୋଲଣ କନେଷ୍ଟବଳ ଖୁବ୍ ହୁସିଆର, ଚାଲାକ । ଗ୍ରାମଲୋକମାନଙ୍କ ଫାନ୍ଦରେ ଏ ମାମଲା ସାବସ୍ତ ହେଲା ନାହିଁ; ଇତ୍ୟାଦି । ହାକିମ କିଛି ଖୋସନାମାଇ କରି କିଣୁକୁ ଛାଡ଼ିଦେଲେ ।

ଆମ୍ଭମାନଙ୍କ ଜମାଦାରେ ଖୁସି ଫୂର୍ତ୍ତିରେ ଆସାମୀକୁ ଧରି ମଫସଲରୁ ଆସିଥିଲେ । ମାମଲାର ହାଲ ଦେଖି ତାହାଙ୍କ ଅଣ୍ଟା ବସିଗଲାଣି । ସାମାନ୍ୟ ଲୋକମାନଙ୍କର ଅବସ୍ଥା ଏହିପରି । ଅଳ୍ପ ଆନନ୍ଦରେ ଫୁଲି ଉଠନ୍ତି, ସେହିପରି ଅଳ୍ପଟିକିଏ ଧକାଖାଇଲେ ବସିପଡନ୍ତି । କଚେରୀବାହୁଡ଼ା ସିଂହେ ପେସ୍କାରଙ୍କ ବସାଘର-କୋଣରେ କାନ୍ଥ ମେଲାଇ ଦେଇ ଲଠ କରି ଶୋଇପଡିଲେ । କାହିଲ ବାହାନାରେ ସେ ରାତ୍ରରେ କିଛି ମୁହଁରେ ଦେଲେ ନାହିଁ । ରାତିରେ ଜମାଦାରଙ୍କୁ କିପରି ନିଦ ହୋଇଥିଲା, ଏଥିରେ ଠିକ୍ ସମ୍ବାଦ ଆମ୍ଭେମାନେ ପାଇନାହୁଁ; ମାତ୍ର ମୁହଁଅନ୍ଧାର ଥାଉଣୁ ଦଗବାରକୁ ଧରି ଫାଣ୍ଡିକୁ ରବାନା ହୋଇଗଲେ । ଆଉ ଆଉ ଦିନେ ଦିନ ପହରେ ଥାଉଁ ଫାଣ୍ଡିରେ ପହୁଞ୍ଚନ୍ତି; ମାତ୍ର ଆଜ ପହୁଞ୍ଚିବାକୁ ରାତି ପହରେ ଗଡିଗଲା । ରୋଷେଇର କିଛି ବନ୍ଦୋବସ୍ତ ହେଲା ନାହିଁ, ଦଗବାର ଗାଁରୁ କିଛି ଜଳଖିଆ ଅଣାଇଦେଲା ।

ସକାଳବେଳେ ଜମାଦାର ଫାଣ୍ଡି ପିଣ୍ଡାରେ ବସି ମନ ମଧ୍ୟରେ ଭାବୁଛନ୍ତି, ଗାଁଲୋକେ ଏଣିକି ତାହାଙ୍କୁ ହେଟାଦର କରିବେ, କେହି ଅବା ଟାପରା କରିବ । କାହାର ମୁହଁକୁ ଭଲକରି ଅନାଉ ନାହାନ୍ତି । ଗାଁର ମୁଖ୍ୟା ମୁଖ୍ୟା ଲୋକମାନେ ପୂର୍ବପରି ହାଜର ହୋଇ ଗୋଟାଏ ଗୋଟାଏ ଦଣ୍ଡବତ କଲେ । ଜମାଦାରଙ୍କ ଆଗମନ ଯଦ୍ୟପି ସମସ୍ତଙ୍କୁ ଜଣା, ମାତ୍ର ଜଣା ନଥିବାର ଏବଂ ରାତିରେ ଉପାସ ଥିବାର କହି ଭାରିଦୁଃଖ ପ୍ରକାଶକଲେ ଏବଂ ତତ୍‌କ୍ଷଣାତ ରୋଷେଇର ଯୋଗାଡ଼ କରିଦେଲେ ।

ଦିନ ପାଣିରେ ବହିଯାଉଛି । ଜମାଦାରେ ଆଗପରି ବେଶୀ ଗାଁ-ଗସ୍ତକୁ ବାହାରୁ ନାହାନ୍ତି । ଆଗପରି ଆପଣାଆପଣା ଦୁଃଖଧନ୍ଦା ସାରି ପାଞ୍ଚ

ସାତ ଜଣ ସଞ୍ଜବେଳେ ଜମାଦାର ପାଖରେ ବସନ୍ତି । ଏଣୁ ତେଣୁ ଢେର କଥାବାର୍ତ୍ତା ହୁଏ । ଓଟେ ପହଞ୍ଚିଗଲେ ଗୃହମାନ ବୋଲିବୋଲା ହୁଏ; ମାତ୍ର ବର୍ତ୍ତମାନ ଦୁଇ ପକ୍ଷରେ ଭାବନା, ଦୁଇ ପକ୍ଷରେ ଜଗାଜଗି । ଜମାଦାରେ ଅନେକ ଉପାୟ ଭାବିଲେଣି, କିଛି କଥା କିନାରା ଲଗାଇ ପାରୁ ନାହାନ୍ତି । ଗ୍ରାମଲୋକେ ନାଟଶାଳାରେ ବସି ବିଚାର କଲେ—ଖମା ତ ଖଲାସ ହୋଇ ଆସିଲା ହଁ; ମାତ୍ର ଏଣିକି କ'ଣ କରାଯିବ ? ସରକାରୀ ପୋଲିସ ମାଡ଼ିବସିଲାଣି, ଆଉ କି ରକ୍ଷା ଅଛି ! ଖମା ମାମଲାରେ କିଛି କରି ମଧ୍ୟ ହାରି । ହିସାବରେ ଦେଖାଗଲା, ଖମା ମାମଲାରେ ଖରଚ ସବୁ ସବୁ ରକମର ସତେଇଶ ଟଙ୍କା ଚଉଦ ଅଣା ଦୁଇପାହି । ଏଣିକି ଆଉ ମାମଲା ଝୁଙ୍କିଲେ ଟଙ୍କା କାହୁଁ ଆସିବ ? ଏଥର ଭେଟି ଟଙ୍କାଟା ଯେପରି ଅସୁଲ ହେଲା, ତାହା ମନ ଜାଣେ । ଟଙ୍କା ବା କାହା ହାତରେ ଅଛି ? ହରେନ ଅଧିକାରୀ ଗୋପାଳ ଘରଡ଼ିଇ ପିଣ୍ଡାରେ ବସି ଖୁବ୍ ପରାମର୍ଶ କଲେ । ଶେଷକୁ ଅବଧାନ ଯେଉଁ ଉପାୟଟା ବାହାର କଲେ, ସମସ୍ତଙ୍କ ମନ ମାନିଗଲା । କାଲି ଖୋଦ ଅବଧାନେ ଜମାଦାରଙ୍କ ପାଖରେ କଥା ପକାଇବେ, ସ୍ଥିର ହେଲା ।

ସଞ୍ଜବତି ଲାଗିଗଲାଣି । ଜମାଦାରେ ଭାଗବତ ଘରେ ବସିଥାନ୍ତି । ହାତବୋଉରଟା ମଧ୍ୟ ନାହିଁ, କାହାକୁ ଡ଼ାକିବାକୁ ଯାଇଛି । ଓଝା ଅବଧାନେ ଧୀର ଧୀର ହୋଇ ପହଞ୍ଚିଲେ । ଜମାଦାରଙ୍କୁ ଦଣ୍ଡବତଟାଏ କରି ପାଖରେ ବସିଲେ । ଖୁବ୍ ନିବେଳା, କେହି ପାଖରେ ନାହିଁ । ଦୁଇଚୁଇଟା ଏଣୁତେଣୁ କଥା ଉତ୍ତାରେ ଅବଧାନେ ଚୁରି ଆଡ଼କୁ ଅନାଇ ଦୁଇ ଚୁରିଥର ଗଳା ଖଙ୍କାରି ଦେଇ ଥରେ ହାଇ ମାରି ଏକାବେଳକେ କଥାଟା ପକାଇଲେ । ସେ କଥାର ସାରମର୍ମ ଏହି—

"ଜମାଦାରଙ୍କ ବସା ଖର୍ଚ୍ଚ ଗାଁ-ଲୋକେ ଚଳାଇବେ । ଏ ସିବାଏ ମାସକୁ ପାନଖର୍ଚ୍ଚ ବୋଲି ଯୋଡ଼ାଏ ଟଙ୍କା ଦେବେ ଏବଂ ଫିମାସ ଏକ ନମ୍ବର ଗ୍ଲେର ଆସାମୀ ଧରିଦେବେ ।"

ଜମାଦାରେ ତ କୋଠି ନିଧିଟାଏ ପାଇଗଲେ, ଏକାବେଳକେ ରାଜି । ସମସ୍ତ ଭାବନାରୁ ମୁକ୍ତ ହେଲେ ।

ତହିଁ ଆରଦିନ ଚୁରିଖଣ୍ଡ ଗ୍ରାମର ମୁଖ୍ୟ ମୁଖ୍ୟ ଲୋକ ସଭା କରି ବସିଲେ, କଥା ଛିଡ଼ିଲା । ଜମାଦାରଙ୍କ ଖର୍ଚ୍ଚ ହିସାବରେ ଚୁରିଖଣ୍ଡ ଗ୍ରାମରୁ

ଉଠିବ । ଏ ସିବା ଜଣେ ପାଣ ହାତରେ କିଛି ଲୁଣ ଦେଇ ଚୋର ବୋଲି ଧରାଇ ଦେବେ, (ଅବଶ୍ୟ ପାଣର ରାଜକବାରରେ କଥା ହେବ) । ସେ ପାଣ ଯେତେଦିନ ବନ୍ଦରେ ରହିବ ତାହାର ପିଲା ଝିଲା ଖର୍ଚ୍ଚ ସବୁ—ସବୁ କଥା ଗ୍ରାମଲୋକେ ତୁଲାଇବେ ।

ବେଶ୍ କାମ ଚଳିଲା । ଜମାଦାରେ ନାମ ମାତ୍ର ଗାଁ-ଗସ୍ତକୁ ବାହାରନ୍ତି, ଚଉପଟ ଖେଳନ୍ତି, ଗାଁ ବୁଲନ୍ତି ଓ ଅବଧାନଠାରୁ ଶୁଦ୍ଧ ଶୁଣି ସୁନ୍ଦର ଭୋଜନଟାଏ ପକାନ୍ତି । ଦୁଇ ଚୋର ନମ୍ବର ମାମଲା ମଧ୍ୟ ଚାଲାଣି ହେଲେଣି । ମାମଲା ସାଫ ସାବୁତ—ଆସାମୀମାନେ ସଜା ପାଇଗଲେଣି ।

"ଅଧର୍ମବିତ୍ତ ବଢ଼େ ବହୁତ,
ଯିବାବେଳେ ଯାଏ ମୂଳ ସହିତ ।"

ଜମାଦାରେ ଅଚ୍ଛା ଦୁଇଟଙ୍କା ରୋଜଗାର କରୁଥିଲେ । "ରାଜା ପର୍ଯ୍ୟନ୍ତ କର୍ଣ୍ଣ ଭ୍ୟାଂ ।" ଅନ୍ୟାୟଟା କେତେଦିନ ଛପିବ ! କଥାଟା ସରକାର କାନରେ ବାଜିଲା । ଏ ବରଷ ଲାଟସାହେବଙ୍କ ଦରବାରରୁ ଯେଉଁ ନିମକି ସାଲତମାମି ରିପୋର୍ଟ ବାହାରିଲା, ସେଥିରେ ଏହି ଠକାଠକି ମାମଲା ପ୍ରସଙ୍ଗ ଦର୍ଜ ଥିବାର ଦେଖାଗଲା । ଜିଲ୍ଲା ହାକିମମାନେ ଦେଖି କାବା । ଖୁବ୍ ହୁସିଆର ହୋଇଗଲେ, ଜଗାଜଗି କଲେ, ମାତ୍ର ଫଳ ନାହିଁ ।

ଜିଲ୍ଲା ହାକିମମାନେ ପୋଲିସ କାରସାଦି ଧରିବାପାଇଁ ଖୁବ୍ ଚେଷ୍ଟା କଲେ, ମାତ୍ର କିଛି କରିପାରିଲେ ନାହିଁ । କପରି ବା ପାରିବେ, ମଫସଲ ଚୌକିଆଠାରୁ ସଦର ସେରସ୍ତାଦାର ପର୍ଯ୍ୟନ୍ତ ଚୋର । "ଚୋର ମାଉସୀ ଯୁଆଣି, ଯାହା ମିଳିଲା ବାଣ୍ଟିକୁଣ୍ଟି ଖାଇ ।" କୌଣସି ଗୋଳମାଳ ନାହିଁ, କାମ ବେଶ୍ ଚାଲୁଛି । ଲୁଣଚୋର ପାଣଗୁଡ଼ାକ ବେଶ କବୁଲ ଜବାବ ଦେଇ ଜେଲଖାନାକୁ ଯାଉଅଛନ୍ତି । ପୋଲିସ କନେଷ୍ଟବଲ ଗାଁରେ ପହରା—ଆଉ ଜାତି ଲୋକ କି ଲୁଣ ଚୋରି କରିବେ ?

ଆଜି ସଦର କଚେରୀରେ ଭାରି ଗୋଟାଏ ଚହଳ ପଡ଼ିଛି । ମାମଲା ଫାଇଲ ମଏକ୍‌କେଲ ସମସ୍ତଙ୍କ ମୁହଁରେ ସେହି କଥା । ବରଗଛମୂଳ କାରଖାନାରେ ଆନ୍ଦୋଳନଟା କିଛି ବେଶୀ । କଥା କ'ଣ ? ଜଣାଗଲା,

ନମକ୍ ମାହାଲର ପୋଲିଶ କର୍ମଚାରୀମାନଙ୍କ ଠକପଣ ଧରିବା ସକାଶେ ସଦରରୁ ଗୋଇନ୍ଦା ପୋଲିଶ ବାହାଲ ହୋଇ ଆସିଥିଲେ । କେତେକ ମାସ ହେଲା ବେଶ ବଦଳାଇ ମଫସଲରେ ବୁଲୁଥିଲେ । ପୋଲିଶର କେତେଜଣ କନେଷ୍ଟବଲର ଠକପଣିଆ ପ୍ରମାଣ କରାଇ ସାକ୍ଷୀ ସାବୁତ ସହିତ ଆସାମୀ ଚାଲାଣ ଦେଇଅଛନ୍ତି । ଆସାମୀମାନଙ୍କ ମଧ୍ୟରେ ଏ କିଏ ? ଆମ୍ଭ କଣାରାମ ସିଂଙ୍ଗେ । ମାମଲା ଖୁବ୍ ଗୋଳମାଳ ଲାଗିଲା । ଆଉ ଆଉ ଆସାମୀମାନଙ୍କ କଥା ମାମଲାର ଆଉ ଆଉ କଥାଗୁଡ଼ାକ ଲେଖିଲେ କ'ଣ ହେବ । ଶେଷରେ ମେଜଷ୍ଟର ସାହେବଙ୍କ ହୁକୁମ ଶୁଣାଗଲା—'କନେଷ୍ଟବଲ କଣାରାମ ସିଂଙ୍ଗର କଠିନ ପରିଶ୍ରମ ସହିତ ଦୁଇମାସ ମିଆଦ ଆଉ କୋଡିଏ ଟଙ୍କା ଜରିମାନା । ଜରିମାନା ନ ଦେଲେ ଅଧିକ ମିଆଦ ତିନିମାସ ।'

ମେଜଷ୍ଟର ସାହେବଙ୍କ ହୁକୁମୀ ତାରିଖଠାରୁ ଆଜକୁ ଊଣା ପୂରା ୫ ମାସ ବିତିଗଲାଣି । ଶୁଣାଶୁଣିରେ କଣା ଭଣ୍ଡାରୀ ଆଜକୁ ଚାରିମାସ ହେଲା ଆସି ଗାଁଆରେ ଅଛି । ଘରୁ ବାହାରେ ନାହିଁ, ଗାଁ ଲୋକେ କେହି ଦେଖନ୍ତି ନାହିଁ । କଣା ଆଉ ଦୁଇପଇସା ଗୁଡ଼ିଏ ଆଣିଥିଲା । ଭଣ୍ଡାରୀ ବାପୁଡ଼ା ଶ'କଡ଼ା ଟଙ୍କା ମୁଣ୍ଡ ଛୁଇଁଲେ ତାକୁ ଡେ଼ର । ହେଲେ ବସି ଖାଇଲେ ସମୁଦ୍ର ବାଲି ନଅଣ୍ଟ । ପଇସାର ଖେଞ୍ଚଖାଞ୍ଚ ହୋଇପଡ଼ିଲାଣି, କେତେଦିନ ବା କୋଣରେ ପଶି ରହିବ ? ଧୀରେ ଧୀରେ ଦାଣ୍ଡକୁ ବାହାରିଲା । ଏଣିକି ଗାଁ ନ ଖଟିଲେ ଅଚଳ । ପେସ୍କାର ଖପା ହୋଇ ବସାରୁ କାଢ଼ି ଦେଇଅଛନ୍ତି । ହାକିମହୁକୁମା ଲୋକ, ଚୈତରଟାକୁ କିପରି ପାଖରେ ପୂରାଇବେ ? ବିପଦ ଅନ୍ଧାର ଆସିବାବେଳେ ଚାରିଆଡ଼ୁ ମାଡ଼ିଆସେ । ଗାଁ ଖଟିବା ଥାଉ, ପୁରୋହିତେ ପୁରାଣ ଫିଟାଇ ଗାଁଲୋକଙ୍କୁ ଶୁଣାଇ ଦେଇଛନ୍ତି – "କଣା ପାଣି ନାହିଁ, ହାଡ଼ି ନାହିଁ, ଜେଲଖାନାରେ ଛତିଶ ପାଟକ ଭାତ ଖାଇ ଆସିଅଛି, ସେ ପତିତ । ଆଉ ତାକୁ ଯେ ଛୁଇଁବ, ନିଆଁ ପାଣି ଦେବ, ସେ ମଧ୍ୟ ପତିତ ।" କଣା ତ ସାତପାଞ୍ଚିରୁ ଗଲାଣି । ଦୁଃଖ କହିଲେ ନ ସରେ । ଦୁଇ ମାସ କାଳ କଣା ପୁରୋହିତ ଦୁଆରେ ଧାରଣା ଦେଇ ଶୋଇଲା । କଂଟସୋକ ପୁରୋହିତଙ୍କ ଗୋଡ଼ତଳେ ମୁଣ୍ଡିଆ ମାରି ମାରି ଚୁନ୍ଦ ଉଡ଼ିଗଲାଣି । ପୁରୋହିତ ଦୟାଳୁ ଲୋକ । ଦୁଇ ମାସ ଉତ୍ତାରେ ଗାଁ ବରଗଛମୂଳେ ସଭା ବସିଲା । ପୁରୋହିତ ପୁରାଣ ଫିଟାଇ ବ୍ୟବସ୍ଥା ଦେଲେ—"ପଞ୍ଚଗବ୍ୟ, ପଞ୍ଚଦାନ—ପୁରୋହିତ-

ବଂଶଯାକ ସକାଶ ନୂତନ ବସ୍ତ୍ର, ପଞ୍ଚାଶ ମୂର୍ତ୍ତି ବ୍ରାହ୍ମଣ ଭୋଜ ଆଉ ଦକ୍ଷିଣା, ଜାତିମାନଙ୍କୁ ତିନବେଳ ଭାତ ।" ପ୍ରାୟଶ୍ଚିତ୍ତ ଦେବା ଦିନ ପୁରୋହିତ ସଭାରେ ସମସ୍ତଙ୍କୁ ଶୁଣାଇ ଶୁଣାଇ କହିଲେ, "ବ୍ରହ୍ମଶାପରେ ଯଦୁବଂଶ ନାଶ—ସ୍ୱୟଂ ବିଷ୍ଣୁ ମେଣ୍ଟନ କରି ପାରିନାହାନ୍ତି ।"

କଣା ଯାହା କହୁ, ବିଲ-ବାଡ଼ି ଦୁଇମାଣ ଓ ଘରେ କଂସା ବେଲା ଦୁଇ ଖଣ୍ଡ କରିଥିଲା, ସରକାରୀ ଜରିମାନା ଟଙ୍କା ଅସୁଲ ସକାଶ ପୋଲିସ ଜମାଦାର ସବୁ ମାଲ ନିଲାମ କରି ନେଇଗଲା । ସବୁ ଯାଇଛି, ଗାଁ ଖଟି ଖାଏ ।

କଣା ସଙ୍ଗରେ କାହାରି ବୋଲାଚାଲି ହେଲେ, ସେ ଠାପରା କରି କହେ ।—"**ପୁନର୍ମୂଷିକୋ ଭବ ।**"

— — —